ଡକ୍ଟର କୃତ୍ତିବାସ ନାୟକ

# ପ୍ରୀତି ଶତକ



ଆଧୁନିକ ଗୀତି କବିତା

# ପ୍ରୀତି ଶତକ

ଆଧୁନିକ ଗୀତି କବିତା

ଗୀତିକାର :

ଡକ୍ଟର କୃତ୍ତିବାସ ନାୟକ

ପ୍ରକାଶକ :

ଅରୁଣ- ତରୁଣ

ଆକାଶବାଣୀ ମାର୍ଗ, ଯୋରନ୍ଦା

ଢେଙ୍କାନାଳ, ୭୫୯୦୧୪

ଫୋନ୍ - ୦୬୭୬୨-୨୩୯୦୬୩

ପ୍ରଥମ ପ୍ରକାଶ- ୨୦୦୫

ମୁଦ୍ରଣ- ଜଗନ୍ନାଥ ପ୍ରୋସେସ୍ , LVL

ମୂଲ୍ୟ : ଷାଠିଏ ଟଙ୍କା ମାତ୍ର ।

ISBN No. 8187968-22-2

# ପ୍ରୀତି ଶତକ



ଡକ୍ଟର କୃତ୍ତିବାସ ନାୟକ

# ପ୍ରୀତି ଶତକ



ଡକ୍ଟର କୃତ୍ତିବାସ ନାୟକ

# ପଦେ କହିଦିଏ

ଗୀତି କବିତା ସାହିତ୍ୟର ଏକ ବଳିଷ୍ଠ ବିଭାବ । ସରଳ ତଥା ମଧୁର ଶବ୍ଦ ଚୟନକୁ ଗୀତି କବିତାର ଶରୀର, ସ୍ୱର-ଲୟ ଓ ତାଳକୁ ଏହାର ପ୍ରାଣ; ଛନ୍ଦ, ଯମକ ଏବଂ ଉପଧା ମିଳନକୁ ଗୀତି କବିତାର ଆତ୍ମା ଭାବରେ ଗ୍ରହଣ କରା ଯାଇପାରେ । ଶରୀର, ପ୍ରାଣ ଓ ଆତ୍ମା ଗୀତି କବିତାର ସାଫଲ୍ୟ ପାଇଁ ଦାୟୀ ହୁଅନ୍ତି । ତେଣୁ ଗୀତିକାର, ସଂଗୀତକାର ତଥା ଗାୟିକ/ଗାୟିକାଙ୍କର ଏକ ମନ, ଏକପ୍ରାଣ ଓ ଏକନିଷ୍ଠ ଉପରେ ଗୀତି କବିତା ଗୋଟିଏ ହୃଦୟରୁ କୋଟିଏ ହୃଦୟକୁ ସଂପ୍ରେଷିତ ହୋଇଥାଏ ।

ଓଡ଼ିଶା ମାଟି ହେଉଛି, ଗୀତି କବିତାର ମାଟି । ଏହି ମାଟିରେ ଅନେକ ମଧୁର ସ୍ୱର ଝଂକୃତ ହୋଇ ଆସିଛି, ପ୍ରାଚୀନ ଯୁଗରୁ । ଅସଂଖ୍ୟ ଗୀତିକବି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ଆସିଛନ୍ତି । ଆଧୁନିକ ଓଡ଼ିଆ ଗୀତି କବିତା ଭଣ୍ଡାରକୁ ମୋର ଗୁଣ୍ଡୁଚି ମୂଷାର ଅବଦାନ ଏହି "ପ୍ରୀତି ଶତକ" ଗୀତିକବିତା ପୁସ୍ତକ । ପୂର୍ବରୁ "ପ୍ରୀତି ଅସରାଏ", ବେଶ୍ ସଫଳତା ଲାଭ କରିଥିଲା । ଏହି ପୁସ୍ତକଟି ଯେଉଁମାନଙ୍କ ଉଦ୍ଦେଶ୍ୟରେ ପ୍ରକାଶିତ, ସେମାନେ ଉପକୃତ ହେଲେ, ମୋର ଶ୍ରମ ସାର୍ଥକ ହେବ ।

*ଗୀତିକାର*
*ଡକ୍ଟର କୃତ୍ତିବାସ ନାୟକ*



ମୋ ମନ ଶିଳାରେ ଲାଗିଗଲ ତୁମେ-
ପ୍ରୀତିର ଶିଉଳି ହୋଇ,
ମୁଦା ଆଖିରେ ମୋ ସପନ ଭରିଲ-
ନିଦକୁ ଛଡ଼େଇ ନେଇ ।
(ଘୋଷା)

ତୁମରି ମନଟି ପୀରତି ସାଗର,
ସୁନାପରୀ ଟିଏ ଜହ୍ନ ରାଇଜର ।
ମୋ ମନ ଆକାଶେ ଆସିଛ ଗୋ ତୁମେ-
ପାହାନ୍ତିଆ ତାରା ହୋଇ । (୧)

ଜାଣିଛ କି ତୁମେ କୁହୁକ ମନ୍ତର,
ଅଜାଣତେ କିଣି ନେଲ ମୋ ଅନ୍ତର ।
ତୁମରି ପରଶ ଦେଇଛି ଗୋ ମୋର-
ତନୁ ମନ ଦୋହଲାଇ । (୨)







ଗୋଟିଏ ରାତିରେ କୋଟିଏ ସପନ-
ମୋତେ ଦେଖାଇଲା ଯିଏ,
ରୂପ ରାଇଜର ହୀରା ଫୁଲ ଆଉ-
ସୁନା ପରୀଟିଏ ସିଏ ।
(ଘୋଷା)

ହସଟି ତାହାର ମୁକୁତାର ଧାର,
ଓଠରେ ଫିଟିଛି ସତେ ମଧୁଝର ।
ବୀଣା ଜିଣା କଣ୍ଠେ ତା' ଗୀତ ଶୁଣିଲେ-
କୋକିଳ ଲାଜେଇ ଯାଏ । (୧)

ଆଖିରେ ଭରିଛି କାହାଣୀ ଅନେକ,
ହୃଦୟେ ଜାଗିଛି ଅଜଣା ପୁଲକ ।
କୁଆଁରୀ ମନର କାଉଁରି ପରଶ-
ସପନେ ହଜେଇ ଦିଏ । (୨)





ହସେ ଆଜି ଫୁଲବନ ନାଚେ ମୋର ତନୁ ମନ,
କୁହ ପ୍ରିୟା କାହା ଲାଗି ଫଗୁଣର ଆଗମନ ।

(ଘୋଷା)

ବୁଣିଦିଏ ସଉରଭ ଭାଙ୍ଗି ନିଜ ଗଉରବ,
କୁହ ଫୁଲରାଣୀ କିଆଁ ଢାଳିଦିଏ ଯଉବନ । (୧)

ଝର ଯାଏ ଝରି ଝରି ସାଗରକୁ ଝୁରିଝୁରି,
ଦେଖ ମିଳନର ପାଇଁ-
ନାହିଁ ତା'ର ଅଭିମାନ । (୨)

ବସନ୍ତ ଯାଇଛି ଛୁଇଁ ନୂଆ କଥା କହି କହି
ତୁମକୁ ପାଇବି ବୋଲି
ମନ ହୁଏ ଛନଛନ । (୩)





ବସନ୍ତର ନବ ମଳୟ ପରଶେ-
ଲାଗେ ସବୁ ନୂଆ ନୂଆ,
ନବ ପଳାସର ଶାଖାରେ ଶାଖାରେ -
ଲଗାଇ ଦେଇଛି ନିଆଁ ।
(ଘୋଷା)

ଫୁଲେ ଫୁଲେ ଆଜି ଛୁଟିଛି ମହକ-
ପରାଣେ ପରାଣେ ଜଗାଇ ପୁଲକ ।
ଅଳି କହିଗଲା କଳିର କାନରେ-
ଫଗୁଣ ଆସିଛି ପ୍ରିୟା । (୧)

ଏଇ ବସନ୍ତ କି ଜାଣିଛି ମନ୍ତର,
କିଣି ନେଇଗଲା ମୋହର ଅନ୍ତର ।
କୁହ ପ୍ରିୟତମ ତୁମରି ପରଶେ-
ଚମକି ଉଠେ ମୁଁ କିଆଁ ? (୨)

  



ଅନେକ ଆଖିର ସପନ ସିନା ମୁଁ-
ଅନେକ ଆଖିର ଲୁହ,
ଭସା ବାଦଲର ବରଷା ମୁହିଁ ଗୋ-
ବରଷି ଯିବାକୁ ଦିଅ ।
(ଘୋଷା)

ଫୁଲ ଯଦି ମୋତେ ହେବାକୁ କହିବ-
ହେବି ମୁହିଁ ସୂର୍ଯ୍ୟମୁଖୀ,
ଅନେକ ଅଳିର ମଧୁର ପରଶ-
କରିବନି ମୋତେ ସୁଖୀ ।
ନୀଳକଇଁ ଯଦି ସଜାଇବ ମୋତେ-
ଚନ୍ଦ୍ରମା ରାଣୀ କୁହ । (୧)

ଅମାନିଆଁ ମୁହିଁ ମନା ମାନେ ନାହିଁ-
ଅବୁଝା ବନ ଝରଣା,
କେତେ ଗିରିପଥ ଡେଇଁ ମୁଁ ଆସିଛି-
ପାଇ ଅନେକ ଯାତନା ।
ସାଗର ଚାହିଁଛି ମୋ ଚଲାପଥକୁ-
ସେ ପଥେ କଢେଇ ନିଅ । (୨)





ତୁମରି ଆଖିର ତତଲା ଲୁହରେ-
ଝରି ପଡେ ଯେଉଁ ନିଆଁ,
ଅନୁତାପ ଭରା ସେ ନିଆଁ ତାତିରେ-
ଜଳି ଯାଉଛି ମୁଁ ପ୍ରିୟା ।
(ଘୋଷା)

ମଧୁ ବସନ୍ତର ଶୀତଳ ଜ୍ୟୋଛନା-
ଅନ୍ତରେ ଦିଏ ବେଦନା,
ଶୀତ ସକାଳର ମଧୁର ପରଶ-
ମୋ ପାଇଁ ଖାଲି ଯାତନା ।
ଶ୍ରାବଣର ସେଇ ରିମିଝିମି ସୁର-
ଉପହାସ କରେ ଯାହା । (୧)

ଶାନ୍ତ ଆକାଶର ନୀଳିମା ବୁକୁରେ-
ଫୁଲ ଆଉ ଫୁଟେ ନାହିଁ,
ସପନଟା ଖାଲି ଅତୀତ ଝୁରଇ-
ଦିଶେ ଅନ୍ଧକାର ଛାଇ ।
ଭୁଲିବି କେମିତି ମନେ ପଡ଼େ ଖାଲି-
ତୁମରି ମଧୁର ନାଆଁ । (୨)

  



କାଠ ପେଡ଼ିରେ ମୁଁ ରଖିଲି କପଡ଼ା-
ଲୁହା ପେଡ଼ିରେ ଗହଣା ,
ମନପେଡ଼ିରେ ମୁଁ ରଖିଲି ଯାହାକୁ-
ସିଏ କରେ ବାଟବଣା ।
(ଘୋଷା)

କପଡ଼ାକୁ ସିନା ଖାଇଲା ରୁଖିଆ-
କାଠକୁ ଖାଇଲା ଘୁଣ,
କଳଙ୍କ ଲାଗିଲା ଲୁହା ପେଡ଼ିଟାକୁ-
ହାଣ୍ଡିକୁ ଖାଇଲା ଲୁଣ,
ମନ ପେଡ଼ିଟିକୁ ଖାଇଲା ସିଏ ଲୋ-
ଜାଣି ହୁଏ ମୁଁ ଅଜଣା । (୧)

କାଠ ପେଡ଼ି ସିନା କେଁ କେଁ ଡ଼ାକେ-
ଲୁହା ହୁଏ ଠଣ ଠଣ,
ମନ ପେଡ଼ି ମୋର କାହିଁକି କେଜାଣି-
ହୋଇଯାଏ ଛନ ଛନ ।
ମିଠା ଲାଗେ ପିତା ପିତା ଲାଗେ ମିଠା-
ଲୁଣ ଲାଗୁଛି ଅଲଣା । (୨)

  



ଭଲ ଲାଗେ ନାହିଁ    ଉଦାସୀ ଜହ୍ନ ଗୋ-
ମଉଳିଲା ମୁହଁ ଦେଖି,
କବରୀରେ ତୁମ   ଶୁଖିଲା କୁସୁମ-
ଅଳସେ ଭରିଛି ଆଖି ।
(ଘୋଷା)

ଜ୍ୟୋଛନାରେ ଯେବେ   ଅନ୍ଧାର ରାଜୁତି,
କୁହ ପ୍ରିୟତମା   ବଞ୍ଚିବି କେମିତି ?
ତୁମ ଆକାଶରେ   ଅଦିନ କୁହୁଡ଼ି-
ବାଦଲ ରହିଛି ଲାଖି   (୧)

ଆଜି ଏ' ପୂନେଇଁ   ଲାଗେ ଅମାରାତି,
ନିରିଜନେ ଶୁଭେ   ବେଦନାର ଗୀତି ।
ଫେରୁଛି ଜହ୍ନ ଗୋ-   ଖାଲି ହାତରେ ମୁଁ-
ସାଜି ନିଜେ ନିରିମାଖି ।   (୨)

  



ମନଟା ଆମର ମିଶିଗଲା ସିନା-
ଜାତି ଯଉତୁକ ମିଶୁନି,
ପାଠପଢ଼ା ଆମ ସରିଗଲା ସିନା-
ଚାକିରିଟା ଏଣେ ମିଳୁନି ।
(ଘୋଷା)

ବାହାଘର ତିଥି ଆସିଗଲା ସିନା-
ବାପାଙ୍କର ନିଦ ଛାଡୁନି,
ତମ ଭାଇ ସବୁ ଜାଣିଗଲେ ସିନା-
ମୋ ଭାଇଙ୍କୁ ଜଣା ପଡୁନି ।
ବୋଉ କହୁଅଛି ମୋ ପୁଅ ତ ଛୁଆଟା
ବାହା ରାଶି ତା'ର ଖୋଲୁନି । (୧)

ତମ ମନ କଥା ବୁଝିଗଲି ସିନା-
କାହାକୁ ବୁଝେଇ ପାରୁନି,
ବୁଲେଇ ବୁଲେଇ କହୁଛି ସିନା ମୁଁ-
ଜାଣି ତମ ନାଆଁ ଧରୁନି ।
ଲୁଚେଇ ତୁମକୁ ଲେଖୁଛି ଏ' ଚିଠି-
କଲମଟା ଆଉ ଚାଲୁନି । (୨)

  



୧୦

ତୁମ ବାଡ଼ିରେ ଫୁଲ ଫୁଟିଲେ- ଆମ ବାଡ଼ିକୁ ବାସେ,
ତମ ଘରକୁ କୁଣିଆ ଗଲେ- ଆମ ଘରକୁ ଦିଶେ ।
(ଘୋଷା)
ତୁମ ଆଖିକୁ ନିଦ ନହେଲେ-
ମୋ କଥା ମନେ ପଡ଼େ ,
ତୁମ ମନରେ ଡେଣା ଲାଗିଲେ-
ମୋ ମନ ଖାଲି ଉଡ଼େ ।
ସେ କଥା କେବେ ମନେ ପଡ଼ିଲେ-
ଏ' କଥା କହି ବସେ ।
ତୁମ ବାଡ଼ିରେ ଫୁଲ ଫୁଟିଲେ- ଆମ ବାଡ଼ିକୁ ବାସେ । (୧)
ଆମ ଚାଳରେ କାଉ ବସିଲେ-
ଚାଉଳ ଦିଅ ତୁମେ,
ମନର କଥା ପଚାରି ଦିଅ-
କେବେ ଭେଟିବୁ ଆମେ ?
ମୋତେ ଦେଖିଲେ ଡାମରା କାଉ-
ତୁମ ନାମକୁ ଘୋଷେ ।
ତୁମ ବାଡ଼ିରେ ଫୁଲ ଫୁଟିଲେ- ଆମ ବାଡ଼ିକୁ ବାସେ । (୨)

  



୧୧

ବାନ୍ଧି ଦିଅ ନାହିଁ ମୋ ପାଦେ ନୂପୁର-
ହୋଇଛି ମୁଁ ଛନ୍ଦହରା,
ବୁଣିବା କେମିତି ପୀରତିର ରେଣୁ-
କାଗଜ ଫୁଲ ମୁଁ ପରା ।
(ଘୋଷା)

ଜଗାଅନି ମୋର ମନ ମୟୂରୀକୁ-
ଘୁମେଇଁ ପଡ଼ିଛି ସିଏ,
ବସନ୍ତ ମଳୟ ପରଶ ଦିଅନା-
ଶ୍ରାବଣୀ ମୁଁ ଝରିଯାଏ ।
ସୁର ଦିଅନାହିଁ ଜୀବନ ବୀଣାରେ
ସେ ଆଜି ବେଦନା ଭରା ।
ବାନ୍ଧି ଦିଅ ନାହିଁ ମୋ ପାଦେ ନୂପୁର-
ହୋଇଛି ମୁଁ ଛନ୍ଦହରା । (୧)

ଦିଅନାହିଁ ଆଉ ଚନ୍ଦନର ଲେପ-
ଜଳି ମୁଁ ଯାଉଛି ସରି,
ଭୁଲି ଯାଇଛି ମୁଁ ପୀରତି ରାଗିଣୀ-
ଅତୀତକୁ ଝୁରି ଝୁରି ।
ନାହିଁ ମୋ ଆଲୋକ କାଲିର ଜହ୍ନ ମୁଁ-
ସାଜିଛି ପାହାନ୍ତି ତାରା ।
ବାନ୍ଧି ଦିଅ ନାହିଁ ମୋ ପାଦେ ନୂପୁର-
ହୋଇଛି ମୁଁ ଛନ୍ଦହରା । (୨)

  



## ୧୨

ପଚାରିଥିଲି ମୁଁ ନାଆଁଟି ତୁମର-
ବୟସଟି କହିଦେଲ,
ମାଗିଥିଲି ତୁମ ଗାଆଁର ଠିକଣା-
ମନର ଠିକଣା ଦେଲ ।
(ଘୋଷା)

କଥା କହିବାକୁ ଲାଜ ଲାଗେ ବୋଲି-
ଆଖିରେ କହିଲ କଥା,
ଓଠ ଚାପି ତୁମେ ମୁରୁକି ହସିଲ-
ମନେ ଭରି ମିଠା ବ୍ୟଥା ।
ତୁମ କଣ୍ଠ ସ୍ୱର ଶୁଣିବି ବୋଲି ତ
ପ୍ରୀତି ସଂଗୀତ ଗାଇଲ । (୧)

ପରଶ ଟିକିଏ ପାଇବା ଆଶାରେ-
ହାତକୁ ପତାଇ ଥିଲି,
ହାତେ ହାତ ଛନ୍ଦି ଗଳାରେ ଲାଗିଲ-
ସରମରେ ଗଲି ଜାଲି,
କହିଥିଲି ତୁମେ ଚିଠି ଖଣ୍ଡେ ଦେବ-
ପ୍ରେମଗ୍ରନ୍ଥ ପଠାଇଲ । (୨)

  



୧୩

ବରଷା ଗୋ ବରଷା ମୋ ପ୍ରିୟା କଥା କୁହ,
ଛୁଇଁ ଆସିଥିବୁ ତୁହି ତା'ର ସୁନା ଦେହ ।
(ଘୋଷା)

ତୋର ରିମି ଝିମି ତାଳେ ମନ ମୋର ନାଚେ,
ତୋର କଳା ମେଘ ଦେଖି ତା' ରୂପ ମୁଁ ରଚେ ।
ବୁଝିଛୁ କି ବରଷା ଗୋ ତା' ଅନ୍ତର କଥା ?
କହିଛୁ ତ ତା'ର କାନେ ମୋ ମନର ବ୍ୟଥା ।
କି' ଉତ୍ତର ଦେଲା ପ୍ରିୟା ସେ କଥାଟି କୁହ । (୧)

ପ୍ରିୟା ବିନା ଏ ଜୀବନ ସାହାରା ସାଜିଛି,
ତାକୁ ଖୋଜିବାକୁ ଯାଇ ନିଜେ ମୁଁ ହଜିଛି ।
ତେଜିଛି ମୁଁ ଅଭିମାନ କହିଛୁ ବରଷା,
ପାଇବି ତା ସଂଗସୁଖ ଦେଲା କି ଭରସା ?
କହିଥିଲି ସୁଖ ଦେଇ ଆଣିବୁ ତା ଲୁହ ।(୨)

  



ଷୀରରେ ଟିକିଏ ଖାର ମିଶିଗଲେ-
ବଦଳିଯାଏ ତା' ନାମ,
ମନରେ ଟିକିଏ ମାନ ମିଶିଗଲେ-
ଉଚ୍ଛନ୍ନ ହୁଅଇ ପ୍ରେମ ।
(ଘୋଷା)

କଥାରେ ଟିକିଏ ନଥା ମିଶିଗଲେ-
ମଥାଟା ହୁଗୁଳି ଯାଏ,
ହସରେ ଟିକିଏ ରୋଷ ମିଶିଗଲେ-
ମନଟା କୁହୁଳି ରହେ,
ମଧୁରେ ଟିକିଏ ମଦ ମିଶିଗଲେ-
ବଦଳି ଯାଏ ତା' ଗୁଣ । (୧)

ଧଳାରେ ଟିକିଏ ନାଲି ମିଶିଗଲେ-
ଗୋଲାପୀ ହୁଏ ତା ରଂଗ,
କଳାରେ ଟିକିଏ କଳଙ୍କ ମିଶିଲେ-
ହୋଇଯାଏ ରସଭଂଗ ।
ପୀୟୁଷେ ଟିକିଏ ବିଷ ମିଶିଗଲେ-
ସରି ଯାଏ ତା'ର କାମ । (୨)





କୁଆଁରୀ ମନଟି ପାହାଡ଼ି ଝରଣା-
ଝର ଝର ଝରିଯାଏ,
କିଶୋରୀ ମନର ପାହାନ୍ତି ସପନ-
ସପନେ ବୁଡ଼େଇ ଦିଏ ।
(ଘୋଷା)

କାହାର ମନରେ ଫୁଟାଏ ଗୋଲାପ-
କାହାକୁ କଣ୍ଟାରେ ଫୋଡ଼େ ,
କାହାକୁ ସେ ମନ ବିକି ଦିଏ ପୁଣି-
କାହା ମନଟିକୁ ଲୋଡ଼େ ।
ଚଞ୍ଚଳା ନଈ ସେ କେଉଁ କୂଳ ବାନ୍ଧି-
କେଉଁ କୂଳ ଖାଇଯାଏ । (୧)

ଆଜିର କଥାକୁ କାଲି ଯାଏ ଭୁଲି-
ଶପଥ ପାଣିର ଗାର,
ନହୁଲି ବୟସ ଚହଲି ଉଠଇ-
ଭରସା ନଥାଏ ତା'ର ।
କାହାର ପାଇଁ ସେ ମରୀଚିକା ସାଜେ-
କାହାକୁ ସେ ଧରା ଦିଏ । (୨)

  



## ୧୬

ଆଖିରେ ଆଖିଏ ଲୁହ ଦେଇ ତୁମେ-
ହସିବାକୁ ମୋତେ କହୁଛ,
ଗଳା ଧରି ତୁମେ ପୀରତି ସଂଗୀତ-
ଗାଇବାକୁ ଠାରି ଦେଉଛ ।
(ଘୋଷା)

ଚୋରାଇ ନେଇଛ ନିଦକୁ ମୋହର,
କେମିତି ସପନ ଦେଖିଲି ପଚାର ।
ହାତେ ହାତ କଡ଼ି ଲଗାଇ କେମିତି-
ନାଚିବି ଅନାଇଁ ରହିଛ । (୧)

ଭୁଲାଇ ଦେଇଛ ସବୁ ଭୋକ ଶୋଷ,
ବୟସ ତୁମର କରେ ଉପହାସ ।
ହୃଦୟରେ ମୋର ବିଷ ଭରି ଦେଇ-
ମିଛେ ବଞ୍ଚିବାକୁ ଚାହୁଁଛ । (୨)





ତୁମ କଥା ଭାବିବାକୁ
ଭାରି ମନ ହଉଛି,
ତୁମ ପାଇଁ ଭୋକ-ଶୋଷ
ସବୁ ଭୁଲି ଯାଉଛି ।
-ନା ଭୋକ ହଉଛି ? ନା ଶୋଷ ହଉଛି ??
(ଘୋଷା)

ନୀରବରେ କାନ ପାରି ତୁମ ଗୀତ ଶୁଣୁଛି,
ଆଖିବୁଜି ତୁମ ରୂପ ମୁଖ ଦେଖି ପାରୁଛି ।

କାହାକୁ ମୋ ମନ କଥା
କହିବାକୁ ଯାଉଛି,
-ନା କହି ପାରୁଛି ? ନା ରହି ପାରୁଛି ?
ତୁମ କଥା ଭାବି ଭାବି ମୁକ ହୋଇ ଯାଉଛି ।
ତୁମ ପାଇଁ ଭୋକ-ଶୋଷ
ସବୁ ଭୁଲି ଯାଉଛି । (୧)

ପୀରତି ବଜାରେ ଯାଇ ତୁମକୁ ମୁଁ କିଣିବି,
ମନ ମୋର ବନ୍ଧା ଦେଇ ତୁମ ମନ ଆଣିବି ।
ମନ ଦିଆ ନିଆ ପାଇଁ
ଭାରି ମନ ହଉଛି ।
-ନା ଦେଇ ହଉଛି, ନା ନେଇ ହଉଛି ?
ତୁମ ପାଇଁ ଭୋକ-ଶୋଷ
ସବୁ ଭୁଲି ଯାଉଛି । (୨)

  



ସୀମନ୍ତରୁ ମୋର କୁଙ୍କୁମ ଛଡ଼ାଇ-
ସିନ୍ଦୂର ଦେଇଛ ବୋଳି,
ପାଦରେ ମୋହର ନୂପୁର ପିନ୍ଧାଇ-
ଘୁଙ୍ଗୁର ଦେଇଛ ଖୋଲି ।
(ଘୋଷା)

ଆଖିରେ ମୋହର ଦେଇଛ ସପନ,
ହୃଦୟରେ ଭରି ଦେଲ ଶିହରଣ ।
ଅନ୍ଧ ଗଳିର ସେ ରଂଗ ମହଲରୁ-
କୋଳକୁ ନେଇଛ ତୋଳି । (୧)

ଅବଗୁଣ୍ଠନ ମୋ ମଥା ପରେ ଦେଇ,
କଳଙ୍କର ଦାଗ ଦେଇଛ ଲିଭାଇ ।
ବିଷ ପିଇ ତୁମେ ଅଞ୍ଜଳିରେ ମୋର-
ପୀଉଷ ଦେଇଛ ଢ଼ାଳି । (୨)





କୁରଙ୍ଗୀ ଜଣେନା          କସ୍ତୁରୀର ମୂଳ-
ପାଇଛି କେବଳ ବାସ ,
ମୋ ପ୍ରିୟା ଜାଣେନା          ଅଂଗେ ଅଂଗେ ତା'ର
ଭରି ରହିଛି ପୀୟୁଷ ।
(ଘୋଷା)

କରିନି କଳନା          ନିରୀହ ଲଳନା-
ତା' ପ୍ରେମର ଗଭୀରତା,
ହସିଦିଏ ସିନା          ସିଏ ତ ବୁଝେନା-
ତା' ଓଠର ମଧୁରତା ।
ଫୁଟେ ଶତଦଳ          ମୋ ପ୍ରିୟା ବାଲିରେ-
ନହୁଲି ତା'ର ବୟସ ।   (୧)

ଦେଖିନି ଅବଳା          ତା'ର କଳା ଡ଼ୋଳା-
ଢଳି ଢଳି ନାଚି ଯାଏ ,
ଜାଣେନା ତା' ମନ          ସାଗର ସମାନ
ମିଛେ ନିମୀଳିତ ହୁଏ ।
ମୋ ପ୍ରିୟା ବୁଝେନା          ହୁଏ ବାଟବଣା -
ଏ'ତ ଯଉବନ ଦୋଷ ।   (୨)

  

## ୨୦

ଅନେକ ଦିନରୁ ରହିଥିଲି ଖାଲି-
ଘନ ଅନ୍ଧକାର ତଳେ,
ଆଲୋକ ଟିକିଏ ପାଇବା ଆଶାରେ-
ଛାହିଁ ରହିଛି ବିକଳେ ।
(ଘୋଷା)

ଅନେକ ସପନ ଦେଖିଛି ଖାଲି ମୁଁ-
ଗଢ଼ିଥିଲି ବାଲିଘର ,
ଅନେକ ଦୁଆରୁ ଫେରିଛି ଖାଲି ମୁଁ-
ବୋଝ ନେଇ ହତାଶାର ।
ଅନେକ ଖୋଜିଛି ଅନେକ ଦେଖିଛି-
ମନ ମୋ କୁହୁଳି ଜଳେ । (୧)

ଆତୁର ହୋଇଛି ପିପାସୀ ହୋଇ ମୁଁ-
ପାଇନି ଟୋପାଏ ଜଳ ,
ଅନେକ ମନରେ ମନ ମିଶାଇଛି-
ପାଇନାହିଁ ଶୁଭ ଫଳ ।
ଅନେକ ପଥର ପଥିକ ଆଜି ମୁଁ-
ଲକ୍ଷ୍ୟ ହୀନ ହୋଇ ବୁଲେ । (୨)

  



ତୁମେ ଯଦି ଭୁଲି ଯାଅ-
ବିରହେ ମୁଁ ଜଳିଯାଏ,
ତଥାପି କହିବି ଖାଲି -
ତୁମକୁ ମୁଁ ଭଲପାଏ ।
(ଘୋଷା)

କଷଣର କାରାଗାରେ ଯାତନାର ସିଂହଦ୍ୱାରେ,
ଠିଆ ହୋଇ କହୁଥିବି ତୁମଛଡ଼ା କେହି ନୁହେଁ ।
(ଘୋଷା)

ଯଦି କେବେ ସଜାଇବ ବଗିଚାର ଛଡ଼ାଫୁଲ,
ଯଦି କେବେ ଫିଙ୍ଗିଦିଅ କରି ଛଡ଼ା ଫୁଲମାଳ ।
ତଥାପି ଭୁଲିବି ନାହିଁ କହିବି ତୁମରି ମୁହିଁ-
ଆଗରୁ ମୁଁ ଚାହିଁଥିଲି, ଏବେ ବି ତୁମକୁ ଚାହେଁ । (୧)

ସହିବି ଦହନ ତାତି ହୋଇବି ଜୀବନ ସାଥୀ,
ଦୁଃଖକୁ ମୁଁ ସୁଖ ମଣି ବିତାଇବି ଦିନରାତି ।
ଅକାଳରେ ଝଡ଼ିଗଲେ ମୋର ସମାଧୀ ଉପରେ-
ଲେଖିଦେବ ତୁମକୁ ମୁଁ-ଏବେ ସୁଦ୍ଧା ଭଲପାଏ । (୨)

  



ଜଳିବା ଜାଣେନା ଯଉବନେ ଯିଏ-
ସିଏ ହୁଏ ବାଟବଣା ,
ଯେଉଁ ଫୁଲବନେ ଅଳି ଆସେନା ସେ -
ବଗିଚାରେ ନୁହେଁ ଗଣା ।
(ଘୋଷା)

ଯେ ନଦୀ ପାଇନି ସାଗର ପରଶ,
ସେ କାହୁଁ ଜାଣିବ ବିରହ ବିରସ ?
ଯେଉଁ ଆଖି ଦିନେ ଲୁହ ଚାଖି ନାହିଁ-
ତାକୁ କି' ନାଚିବା ଜଣା ।
ସିଏ ହୁଏ ବାଟବଣା । (୧)

ଯେଉଁ ସଂଗୀତରେ ସୁର ଛନ୍ଦ ନାହିଁ,
ସିଏ କାହା ମନ ଜିଣି ପାରେ ନାହିଁ ।
ପଦ୍ମତୋଳା ଶୁଣି ଫଣା ଉଠାଏନି-
ସିଏ କି ନାଗରେ ଗଣା ?
ସିଏ ହୁଏ ବାଟବଣା । (୨)

  

## ୨୩

ହଜାଇ ମନକୁ ନୀଳ ସାଗରରେ-
ଖୋଜିଲି ସାଗର କୂଳେ,
କାହା ଇସାରାରେ ନିଜକୁ ଭୁଲି ମୁଁ-
ଧରା ଦେଲି ବଳେ ବଳେ ।
(ଘୋଷା)

ଜିତିବି ବୋଲି ମୁଁ ମନ କରି ଟାଣ ,
ହାରି ଗଲି ସିନା ଭାଙ୍ଗି ବଡ଼ ପଣ ।
ଧରିବାକୁ ଯାଇ ଧରାଦେଲି ମୁହିଁ-
କାହା ପ୍ରୀତି ପଞ୍ଜୁରୀରେ ?
ଖୋଜିଲି ସାଗର କୂଳେ । (୧)

ଭଲ ଲାଗେ ଆଜି ହଜିବାକୁ ମୋତେ,
ହାରିଯାଇ ପୁଣି ଧରା ଦେବି ସତେ ।
ମନ କହୁଛି ମୋ ଲୁଚି ଯାଆନ୍ତି କି-
ତାହାରି ଅନ୍ତର ତଳେ ।
ଖୋଜିଲି ସାଗର କୂଳେ । (୨)

  

## ୨୪

ଅସ୍ତରାଗର କ୍ଲାନ୍ତ ପଥିକ ମୁଁ-
ନଷ୍ଟ ନୀଡ଼ର ପକ୍ଷୀ,
ଭଗ୍ନ ତରୀର ନାବିକ ସାଜି ମୁଁ-
ଜୀବନେ ଯାଇଛି ଠକି ।
(ଘୋଷା)

ପ୍ରୀତିର ସଉଦା କରିବାର ଆଶେ,
ବଳେ ଆସିଥିଲ ତୁମେ ମୋର ପାଶେ ।
କିଣି ପାରିଲିନି ଫେରି ପାରିଲିନି-
ଯାହା ମୁଁ ଦେଇଛି ବିକି ।
ନଷ୍ଟ ନୀଡ଼ର ପକ୍ଷୀ । (୧)

ଛଳନାରେ ଗଢ଼ା ତୁମ ବାଲିଘର ,
ଧୂଳି କଲ ମୋର ଆଶାର ମୀନାର ।
ଆଜି ତୁମ ହସ କରେ ଉପହାସ-
ଆଉ କି ରହିଲା ବାକି ?
ନଷ୍ଟ ନୀଡ଼ର ପକ୍ଷୀ । (୨)







ସାଥୀ ହୀନ ସାଗରରେ-
ତୁମେ ମୋର ନଉକା,
ମୋ ଜୀବନ ନାଟକରେ-
ତୁମେ ଏକା ନାୟିକା ।
(ଘୋଷା)

ଜଗାଇ ଦେଇଛ ତୁମେ ହୃଦେ ପ୍ରୀତି ଜୁଆର,
ଭିଜାଇ ଦେଇଛ ସତେ ଦଗ୍ଧ ମନ ମୋର ।
ମୋର ପ୍ରୀତି ସଂଗୀତର ତୁମେ ହେଲ ଗାୟିକା ।
ସାଥୀ ହୀନ ସାଗରରେ-
ତୁମେ ମୋର ନଉକା । (୧)

କେତେ ଖୋଜୁଥିଲି ଚାନ୍ଦ ପାଇଛି ମୁଁ ହାତରେ,
ଭୁଲିଛି ଦୁନିଆ ପାଇ ତୁମକୁ ମୋ ପାଶରେ ।
ମୁଁ ତୃଷାର୍ତ୍ତ ତୁମେ ଝର ଆସ ବହି ବହିକା ।
ସାଥୀ ହୀନ ସାଗରରେ-
ତୁମେ ମୋର ନଉକା । (୨)





ଭୁଲି ଯାଇଛି ମୁଁ ତୁମ ଡାକ ନାଆଁ-
ମନେ ପଡୁ ନାହିଁ ଜମା,
ଖୋଜି ପାଉନାହିଁ ହଜେଇ ଦେଇଛି-
ତୁମରି ଲେଖା ଠିକଣା ।
(ଘୋଷା)

ପ୍ରଥମ ଦେଖାରେ କିଣିନେଲ ମୋତେ-
ବିକି ହୋଇ ଗଲି ମୁହିଁ,
ଖୋଜିବାକୁ ଯାଇ ହଜିଗଲି ନିଜେ-
ନିଜକୁ ପାଇଲି ନାହିଁ ।
ପୀରତି ବଜାରେ ଶରଧାର ମୂଲ-
ମୋତେ କିବା ଥିଲା ଜଣା ?
ଖୋଜି ପାଉନାହିଁ ହଜେଇ ଦେଇଛି-
ତୁମରି ଲେଖା ଠିକଣା । (୧)

ହଜିବାର ସୁଖ ଖୋଜି ମୁଁ ପାଇଛି-
ଶୀତଳ ନିଆଁରେ ଜଳି,
ତୁମରି ଆଖିର ଭାଷାକୁ ବୁଝି ମୁଁ-
ଯାଇଛି ଦୁନିଆ ଭୁଲି ।
ଠିକଣା ଜାଣେନା ଜାଣି ବି ଅଜଣା-
ହୋଇଯାଏ ବାଟବଣା ।
ଖୋଜି ପାଉନାହିଁ ହଜେଇ ଦେଇଛି-
ତୁମରି ଲେଖା ଠିକଣା । (୨)







## ୨୭

ଖୋଜି ଦେବି ବୋଲି କହି-
ମୋତେ ଦେଲ ହଜେଇ,
ନିଜକୁ ଅବୁଝା କରି-
ମୋତେ ଦେଲ ବୁଝେଇ ।
(ଘୋଷା)
ହସିବାକୁ କହି ମୋତେ ମିଛେ କନ୍ଦାଇଛ ଭିତରେ,
ବଞ୍ଚିବାକୁ କୁହ ସିନା ବିଷ ଦେଲ ଭାତରେ ।
ଉଠାଇବା ଛଳନାରେ
ଖାଲେ ଦେଲ ଗଡ଼େଇ ।
ଖୋଜି ଦେବି ବୋଲି କହି-
ମୋତେ ଦେଲ ହଜେଇ । (୧)
ବାଟ ବୋଲି ଦେଖାଇଲ ଖାଲଖମା ଅନ୍ଧାର,
ପ୍ରେମ ବୋଲି ପ୍ରତାରଣା ଏ'କି ତୁମ ବିଚାର ?
ଭୁଲି ଚାଲିଗଲ ମୋତେ-
ବାସି ଫୁଲ ସଜେଇ ।
ଖୋଜି ଦେବି ବୋଲି କହି-
ମୋତେ ଦେଲ ହଜେଇ । (୨)

  



ମରମ ଭେଦି ଲେଖୁଛି ଚିଠି-
କହୁଛି ରାଣ ଖାଇ,
ଦରଦୀ କଣ୍ଠେ ଗାଉଛି ଗୀତ -
କେବଳ ତୁମ ପାଇଁ ।
(ଘୋଷା)

କହିଲ ସତେ ଲିଭିବ ଯଦି-
ତୁମ ହୃଦୟ କୋହ,
ବରଷା କରି ଝରାଇ ଦେବି-
ଆଖିର ସବୁ ଲୁହ ।
ଜଳିବି ମୁହିଁ ତୁମରି ପାଇଁ ।
ସକଳ ଦୁଃଖ ନେଇ ।
ଦରଦୀ କଣ୍ଠେ ଗାଉଛି ଗୀତ -
କେବଳ ତୁମ ପାଇଁ । (୧)

ଓଠରେ ତୁମ ଚେନାଏ ହସ-
ଦେଖିବି ବୋଲି ସତେ,
ସହିବି ମୁହିଁ ନୀରବ ହୋଇ-
ଦୁଃଖ ଯାତନା ଯେତେ ।
ମୋ ଦୁଇ ହାତ ପୂରିବ ସତେ-
ରହିଛି ଖାଲି ଚାହିଁ ।
ଦରଦୀ କଣ୍ଠେ ଗାଉଛି ଗୀତ -
କେବଳ ତୁମ ପାଇଁ । (୨)



୨୯

ମୋର ମନ ଆକାଶରେ-
ତୁହି ସୁନା ଚଢ଼େଇ,
ଜାଣେନା ମୁଁ କେତେବେଳେ-
କିଏ ଦେଲା ଉଡ଼େଇ ।
(ଘୋଷା)

ଓଠରେ ଭରିଛି ତୋର ମିଠା ମିଠା ହରଷ,
ହୃଦୟରେ ଭରିଅଛି ପୀରତିର ପୀୟୁଷ ।
ମୋ ପାଇଁ ତୋ ସୁନା ଦେହ-
କିଏ ଦେଲା ଗଢ଼େଇ ।
ମୋର ମନ ଆକାଶରେ-
ତୁହି ସୁନା ଚଢ଼େଇ । (୧)

ଆଖିରେ ମୋ ଭରି ଦେଲୁ ସପନର ଅଳକା,
ତୋ ପାଇଁ ଫୁଟିଲା ମନେ କୋଟି କୋଟି ତାରକା ।
କହି ଦେ ତୁ ଯିବୁ ନାହିଁ-
ପ୍ରୀତି ଡୋର ଛିଡ଼େଇ ।
ମୋର ମନ ଆକାଶରେ-
ତୁହି ସୁନା ଚଢ଼େଇ । (୨)







ଅଳି କହିଗଲା କଳିର କାନରେ-
ଫଗୁଣ ଆସିଛି ପ୍ରିୟା ,
ନବ ମଳୟର ମଧୁର ପରଶେ-
ପ୍ରୀତି ହେବ ଦିଆ ନିଆ ।
(ଘୋଷା)

ଜାଗିଛି ମୋ ମନେ ନୂଆ ପୁଲକ.
ପାଗଳ କରିଛି ତୁମ ମହକ ।
ଫଗୁଣର କାଲି ପହିଲି ସକାଳେ-
ତୋ ଦୁଆରେ ହେବି ଠିଆ ।
ଅଳି କହିଗଲା କଳିର କାନରେ-
ଫଗୁଣ ଆସିଛି ପ୍ରିୟା ।     (୧)

ତୁମେ ନବବଧୂ ସାଜିବ ଗୋ ଅଳି,
ମୋର ଅଞ୍ଜଳିରେ ମଧୁ ଦେବ ଢାଳି ।
ତୁମରି ସୁରଭି ହୃଦୟେ ମୋହର-
ଲଗାଇ ଦେଇଛି ନିଆଁ ।
ଅଳି କହିଗଲା କଳିର କାନରେ-
ଫଗୁଣ ଆସିଛି ପ୍ରିୟା ।     (୨)

  

## ୩୧

କି   ସୁଖ ପାଉଛ କୁହ ତ ଚନ୍ଦ୍ରମା-
କଳଙ୍କର ଟିକା ଦେଇ,
ବିଭାବରୀ ମୋତେ  ସଜାଇଛ କିଆଁ-
ନିରୀହ ମୁଁ ନୀଳ କଇଁ ।
(ଘୋଷା)

ତୁମେ ରଚିଥିଲ ଆକାଶ ରାଇଜେ-
ପୀରତିର ମାୟାଜାଲ,
କେତେ ଦୂରେ ଥିଲି ତଟିନୀ କନ୍ୟା ମୁଁ-
କୁହୁକ ମନ୍ତର କଲ ।
ନିଜକୁ ସଜାଇ ହଟିଆ କହ୍ନାଇ-
ମୋତେ ସଜାଇଛ ରାଈ ।
ନିରୀହ ମୁଁ ନୀଳ କଇଁ ।     (୧)

ଶୁଭେନା କି ଚନ୍ଦ୍ର ଅପବାଦ ବାଜା ?
ସରମରେ ଯାଏ ଜଳି,
ସହିପାରେ ନାହିଁ କହି ପରେ ନାହିଁ-
ଦିବସେ ଯାଏ ମଉଳି ।
କେତେ ଦିନ ଆଉ ବଞ୍ଚିବି ଏମିତି-
ଅଭିସାରିକାଟି ହୋଇ  ?      (୨)

  

## ୩୨

ସବୁ ଶାମୁକାରୁ ମିଳେନା ମୁକୁତା-
ସବୁ ଫୁଲେ ନାହିଁ ବାସ,
ସବୁ କାନ୍ଦଣାରେ ଲୁହ ଝରେ ନାହିଁ-
ସବୁ ହସ ନୁହେଁ ହସ ।
(ଘୋଷା)
ସବୁ କଥା ମନ ଘାରି ପାରେ ନାହିଁ,
ସବୁ ସୁର ମନ ଧରିପାରେ ନାହିଁ ।
ସବୁ ଚାହାଣିରେ ନଥାଏ ଇସାରା-
ସବୁ କାମେ ନାହିଁ ଯଶ ।
ସବୁ ଫୁଲେ ନାହିଁ ବାସ । (୧)
ସବୁ ଆଖି ଖୋଜି ପାରେନା ତା' ସାଥୀ,
ସବୁ ଓଠେ ମଧୁ ଝରେ ନାହିଁ ନିତି ।
ସବୁ ବନ୍ଧନରେ ନଥାଏ ଆନନ୍ଦ-
ସବୁ ନୁହେଁ ପ୍ରୀତି ଫାଶ ।
ସବୁ ଫୁଲେ ନାହିଁ ବାସ । (୨)

  



ଯାହାକୁ ଏ' ମନ ପ୍ରାଣ ବିକିଥିଲି-
ସାତ ପର କଲା ସିଏ,
ଯେଉଁ ନାମଟିକୁ ଘୋଷି ହେଉଥିଲି-
ସେ ନାମ ଯାତନା ଦିଏ ।
(ଘୋଷା)

ଯାହାକୁ ଦେଖିବା ନିଶା ଘାରିଥିଲା,
ଯାହାର ପରଶ ସ୍ୱର୍ଗ ସୁଖ ଥିଲା ।
ସିଏ ଆଜି ଯଦି ମୋ ଆଗେ ଯାଉଛି-
ଅଚିହ୍ନା ଅଜଣା ହୁଏ ।
ସାତ ପର କଲା ସିଏ । (୧)

ଯେଉଁ ଓଠ ତା'ର ଥରି ଉଠୁଥିଲା,
ଯେଉଁ ଆଖି ଦୁଇ ନାଚି ଉଠୁଥିଲା ।
ସେହି ଓଠ ସେହି ସେହି ଆଖି ଦୁଇଟିକୁ-
ପଥର କରିଲା କିଏ ?
ସାତ ପର କଲା ସିଏ । (୨)

  



# ୩୪

ସେଇ ଗୀତଟି ଯାହା-
ତୁମରି ଅନୁରୋଧ,
ଶୁଣିବ ତୁମେ ଯେଉଁଠି ଥିଲେ-
ହୋଇବ ମନବୋଧ ।
(ଘୋଷା)

ବାଟରେ ଥିଲେ ଅଟକି ଯିବ,
ପାଠରେ ଥିଲେ ଅନେଇ ଦେବ ।
ସପନେ ତୁମେ ଦେଖିବ ମୋତେ-
ଆଖିରେ ଥିଲେ ନିଦ ।
ତୁମରି ଅନୁରୋଧ । (୧)

ଆକାଶ ତଳେ ଜହ୍ନକୁ ଚାହିଁ,
ତୁମେ ଗୋ ଯଦି ଥିବଟି ଚାହିଁ ।
ଜ୍ୟୋଛନା କରି ଝରାଉ ଥିବି-
ଗୀତର ସୁର ଛନ୍ଦ ।
ତୁମରି ଅନୁରୋଧ । (୨)

  



ଭଲ ପାଇବାର ଜଳନ୍ତା କୁଇରେ
ପଡ଼ି ଯାଇଥିଲି ମୁହିଁ,
ତୁମେ କିଆଁ ପୁଣି ପାଖେଇ ଆସିଲ-
ଆଗପଛକୁ ନ ଚ଼ାହିଁ ? (ଘୋଷା)

ଜାଣି ନ ଥିଲି ମୁଁ ଏ' କୁଇରେ ଯିଏ -
ଥରେ ଦେଇଥାଏ ଝାସ,
ସେ କୁଇର ତାତି ଲେଲିହାନ ଶିଖା -
ତାକୁ କରିଦିଏ ନାଶ ।
ମୁଁ ତ ଜଳୁଥିଲି ତୁମେ ଦେଖୁଥିଲ -
କେମିତି ଶିଖିଲ ନାହିଁ । (୧)

ଡାକୁଥିଲି ସିନା ତୁମ ନାମ ଧରି -
କହୁଥିଲି ମୋତେ ଦେଖ,
ସେ କଥା ନ ବୁଝି କହିଲ ହେ ପ୍ରିୟ-
ତୁମ ପାଶେ ମୋତେ ରଖ ।
ଝାସ ଦେଲପୁଣି ସେ ପ୍ରେମ କୁଇରେ -
ଏକାକାର ଗଲେ ହୋଇ । (୨)

  




ରଙ୍ଗ ବୋଲି ଦିଏ ପୀରତି ପଥରେ-
ମାନ ଆଉ ଅଭିମାନ,
ବିରହର ପରେ ମିଳନ ଘଟିଲେ-
ଗାଢ଼ ହୋଇଯାଏ ପ୍ରେମ ।
(ଘୋଷା)

ବାଙ୍କ ଚାହାଣୀ କି ଅଧା ଦେଖା ମୁହଁ-
ଭୁଲି ହୁଏ ନାହିଁ କେବେ ,
ଅଳପ କଥାରେ ଲାଜ ଲାଜ ଆଖି-
ପ୍ରୀତି ଆଣିଦିଏ ବେଗେ ।
ଟିକିଏ ହସରେ କିଣା ବିକା ଆଉ-
ଦିଆ ନିଆ ହୁଏ ମନ । (୧)

ଗୋରା ଗାଲ ପରେ କଳା ଜାଇ ଥିଲେ-
ମୁହଁଟି ସୁନ୍ଦର ଦିଶେ,
ତାକୁ ଯାଏ ବଳି କଳି ପରେ ଅଳି-
ପ୍ରାଣ ବିକିବାକୁ ବସେ ।
ଶରତ ଆକାଶେ ଦିଶଇ ସୁନ୍ଦର-
ବାଦଲ ଫାଙ୍କରୁ ଜହ୍ନ । (୨)







ପରୀ ରାଇଜର  ସିଏ ରାଜ କୁମାରୀ,
ଲାଗିଛି ତା' ଡେଣା ସିଏ ଯିବ ତ ଉଡ଼ି ।
(ଘୋଷା)

କଣ୍ଟକ ଭରା ଗୋଲାପ-
ସେ ଉପବନେ,
ସିଏ ଯାହା ପାଇଁ
ତାକୁ ଗୋଲାପ ଚିହ୍ନେ ।
ପାହାଡ଼ି  ଝରଣା  ସିଏ  ଯାଉଛି ଝରି ।
ପରୀ ରାଇଜର  ସିଏ ରାଜ କୁମାରୀ ।   (୧)

ବେଣ୍ଟ ପୋଖରୀ କଇଁର -
ଚାନ୍ଦରେ ମନ ,
କାଳିନ୍ଦୀ  ନଳିନୀ  ସିଏ-
ସୂରୁଜ  ଧନ  ।
ମଧୁର ସପନେ ମନ ଯାଇଛି ଭରି ।
ପରୀ ରାଇଜର  ସିଏ ରାଜ କୁମାରୀ ।   (୨)

  



ଦୁନିଆ ଆଖିରେ ସୁନାପିଲା ସାଜି-
ମଉନେ ରହିଲି ଯାହା,
କିଏ ବା ବୁଝିବ ମନ ଗହନେ ମୋ-
ବହୁଛି ଅଶାନ୍ତ ବାଆ ।
(ଘୋଷା)

ଗୋପନେ ଗୋପନେ ଦେଖୁଥିଲି ଖାଲି-
ଅନେକ ମିଠା ସପନ,
ମୋ ଜୀବନ ଖାତା ସାଦା ରହିଗଲା-
ଜାଳି ମୋର ପ୍ରୀତି ବନ ।
ତୁମ ପ୍ରୀତି ଢେଉ ମୋ କୂଳ ନଛୁଇଁ-
ସାଗରେ ଫେରିଲା ଆହା ।
ଦୁନିଆ ଆଖିରେ ସୁନାପିଲା ସାଜି-
ମଉନେ ରହିଲି ଯାହା । (୧)

ଏକା ଏକା ଥିଲେ ମନେ ପଡ଼େ ତୁମ-
ପ୍ରଥମ ଦେଖାର କଥା,
ଲାଜ ଲାଜ ହୋଇ ମୁରୁକ ହସିଲ-
ନଇଁ ପଡ଼ିଥିଲା ମଥା ।
ଓଠରେ ତୁମର ଭରିଥିଲା ଭାଷା-
ରହିଗଲା ସେ ଅକୁହା ।
ଦୁନିଆ ଆଖିରେ ସୁନାପିଲା ସାଜି-
ମଉନେ ରହିଲି ଯାହା । (୨)

  



କିଏ ମୋ ନୟନେ ଭରିଛି ଗୋପନେ-
ରଙ୍ଗ ଭରା ଏ' ସପନ,
ଅଙ୍ଗେ ଅଙ୍ଗେ ମୋର ଦେଲା ଶିହରଣ-
ମନ ହୁଏ ଛନ ଛନ ।
(ଘୋଷା)

ଅଦିନ ବସନ୍ତ ଆସିଲା କି ଆଜି-
ବହେ ବୋରା ବଇତାଳି,
ଫୁଲେ ଫୁଲେ ଆଜି ଲାଗିଛି ଉତ୍ସବ-
ମହୁମାଛି ଖେଳେ ଦୋଳି ।
ଜାଣେନା ମୁଁ ଆଜି କାହା ଆଗମନେ-
ହସେ ବନ ଉପବନ ।
କିଏ ମୋ ନୟନେ ଭରିଛି ଗୋପନେ-
ରଙ୍ଗ ଭରା ଏ' ସପନ । (୧)

ଜ୍ୟୋଛନା ଆକାଶେ ଖିଲି ଖିଲି ହସେ-
ତୁନି ତୁନି କହେ ତାରା,
ପୀରତି ପଥରେ ଯେ ପାଦ ଦେଇଛି-
ଜଳିଛି ଜୀବନ ସାରା ।
କାହାର ପରଶେ ଅଜଣା ପୁଲକେ-
ଥରି ଉଠେ ତନୁ ମନ ।
କିଏ ମୋ ନୟନେ ଭରିଛି ଗୋପନେ-
ରଙ୍ଗ ଭରା ଏ' ସପନ । (୨)

  



୪୦

କହଲୋ ବଉଳ କି ହେଲା ମୋହର-
ଲାଜ ଲାଜ ଲାଗେ କିଆଁ,
ଗୁପତେ ପଶିଛି ଅଜଣା ଜର କି ?
ସବୁ ଲାଗେ ନୂଆ ନୂଆ ।
(ଘୋଷା)

ବିପରିତ କଥା ଦେଖୁଛି ବଉଳ-
କହିବାକୁ ଲାଗେ ଡର,
ପରଲୋକ କଥା ଲାଗେ ମିଠା ମିଠା-
ଘର ଲୋକ ଲାଗେ ପର ।
ସପନ ଦେଖୁଚି ରାଜ କୁମାର ଲୋ-
ପାଖରେ ହୋଇଛି ଠିଆ ।
ସବୁ ଲାଗେ ନୂଆ ନୂଆ । (୧)

ଫୁଲରେ ଆଦର ବଢୁଛି ବଉଳ-
ଜହ୍ନରେ ରହୁଚି ମନ,
ଦେହରେ ଲାଗିଲେ ମଳୟ ପବନ-
ମନ ହୁଏ ଛନ ଛନ ।
କାହାକୁ କେଜାଣି ଖୋଜୁଛି ମୋ ଆଖି-
ହୋଇ ପଡ଼େ ଅମାନିଆଁ ।
ସବୁ ଲାଗେ ନୂଆ ନୂଆ । (୨)

  

## ୪୧

ଝୁରେ ମୋର ମନ ରାଧା ମନ ନେଇ-
ତୁମ ଶ୍ୟାମ ରୀତି ଦେଖି,
ଦୁଇ କୂଳ ଛୁଇଁ ଉଜାଣି ଯମୁନା-
ସାଜିଛି ମୋ ଦୁଇ ଆଖି ।
(ଘୋଷା)

ତୁମ ପ୍ରୀତି ବଂଶୀ ରହିଲା ମଉନେ-
ଜଡ଼ କରି ଗୋପୀ ପ୍ରାଣ ,
ଚଇତାଳି ବାଆ ବହେ ନା ମୋ ପ୍ରାଣେ-
ଜଳୁଛି ହୃଦୟ ବନ ।
ଶ୍ୟାମ ପାଇଁ ରାଧା ରାଧା ପାଇଁ ଶ୍ୟାମ-
ବିଧାତା ଦେଇଛି ଯୋଖି ।
ଝୁରେ ମୋର ମନ ରାଧା ମନ ନେଇ-
ତୁମ ଶ୍ୟାମ ରୀତି ଦେଖି । (୧)

ବିରହୀ ପରାଣ ଚାତକ ପରାଏ-
ଚାହିଁଛି ବରଷା ଜଳ,
ତୁମରି ମଥୁରା ଫେରିବା ପଥକୁ-
ଚାହିଁଥିବି କାଳ କାଳ ।
ଅତୀତ ଶରଧା ସନ୍ତକ ମୋହର-
ରଖିଛି ଯତନେ ଯାକି ।
ଝୁରେ ମୋର ମନ ରାଧା ମନ ନେଇ-
ତୁମ ଶ୍ୟାମ ରୀତି ଦେଖି । (୨)



## ୪୨

କାଲି କଥା ଆଜି ପାଇଁ ହୋଇଲା କାହାଣୀ,
ତୁମେ ଥିଲ ସେ ଦିନର ବନସ୍ତ ହରିଣୀ ।
(ଘୋଷା)

କିଏ କାଢ଼ିନେଲା ତୁମ ଆଖିରୁ ସପନ ?
ଓଠରୁ କେ ରଙ୍ଗ ତୁମ କରିଲା ହରଣ ?
ତୁମ ରୂପ ଆଇନାରେ-
ସେହି ରଙ୍ଗ ପାଉନି ।
କାଲି କଥା ଆଜି ପାଇଁ -
ହୋଇଲା କାହାଣୀ । (୧)

ତୁମ ମନ ନାଚୁଥିଲା ଝରଣାର ତାଳେ,
କଥାରେ କଥାରେ ତୁମ ସତେ ମହୁ ଝରେ ।
କାହିଁ ଗଲା ସେ ଅତୀତ-
କୁହ ରୂପ ରାଣୀ ।
କାଲି କଥା ଆଜି ପାଇଁ -
ହୋଇଲା କାହାଣୀ । (୨)





ରଂଗ ରଂଗିଆ ମୋ ପରଜାପତି ,
ଡେଣାକୁ ହଲାଇ ହେଉ ତୁ ଫୁଲେଇ-
ମନ ବଗିଚାରେ ବୁଲୁଛୁ ନିତି ।
(ଘୋଷା)

ମନଟି ତୋହର ଛନ ଛନିଆଁ,
କଜଳ ଆଖି ତୋ' କନ କନିଆଁ ।
ଓଠରେ ଭରା ତୋ' କେତେ ମଧୁରସ-
ଦିଏ ତୋ' ଚାହାଣୀ ଛାତି କରତି ।
ରଂଗ ରଂଗିଆ ମୋ ପରଜାପତି । (୧)

ଜାଣି ଜାଣି ବସୁ ଆଖି ଆଗରେ ,
ହାତ ବଢ଼େଇଲେ ଯାଉଛୁ ଦୂରେ ।
ଉପରେ ଉପରେ ମିଠା କଡ଼ା କହି-
ଭିତରେ ଭିତରେ କରୁ ପୀରତି ।
ରଂଗ ରଂଗିଆ ମୋ ପରଜାପତି । (୨)





୪୪

କୁଆଁରୀ ମନରେ  କାଉଁରୀ ଛୁଆଁଇ-
କୁହ ତ କି ସୁଖ ପାଅ ?
ହୃଦୟ ତନ୍ତ୍ରୀରେ ନୂଆ ସୁର ଦେଇ-
ଅଜଣା ରାଇଜେ ନିଅ ।
(ଘୋଷା)

ନିରୀହ କଳିରେ  ଶରଧା କିରଣ-
ବୁଣି ଦିଅ ଜାଣି ଜାଣି ,
ପ୍ରୀତି ଫୁଲ ବନେ  ସପନ ଦେଖାଇ-
ଶିହରଣ ଦିଅ ପୁଣି ।
ପ୍ରଣୟ ନୂପୁର ବଜାଇ ମୋ ପାଦେ-
ନୂଆ ପଥେ ଘେନି ଯାଅ ।
କୁଆଁରୀ ମନରେ  କାଉଁରୀ ଛୁଆଁଇ-
କୁହ ତ କି ସୁଖ ପାଅ ?     ( ୧ )

ଲଗାଇ ନୟନେ  ପୀରତି  କଜ୍ଜଳ-
ମୁଖରେ ମଧୁର ଭାଷା,
ଲଗାଇ ଏ' ପ୍ରାଣେ  ଅଜଣା ପୁଲକ-
କେତେ ଭାବ କେତେ ଆଶା ।
କାମନାର ମାୟାଜାଲ ବୁଣି ବୁଣି-
ସରମରେ ଜାଳି ଦିଅ ।
କୁଆଁରୀ ମନରେ  କାଉଁରୀ ଛୁଆଁଇ-
କୁହ ତ କି ସୁଖ ପାଅ ?       ( ୨ )






ମଉଳା ମୁଁ କୃଷ୍ଣ ଚୂଡ଼ା -
ବିରହିଣୀ କପୋତୀ,
ଆକାଶର ନୀଳ ବୁକେ-
ସାଉଁଟେ ସେ ପୀରତି ।
(ଘୋଷା)

ସାଗରର ବାଲି ରାଶି-
ନୀଳ ଢେଉ ଖୋଜିଛି,
ମତୁଆଲା ଫଗୁଣଟା-
ଭଗାରି ମୋ ସାଜିଛି ।
ବାଦଲ କହିଛି ଆଉ ଫେରିବନି ସେ ରାତି ।
ମଉଳା ମୁଁ କୃଷ୍ଣ ଚୂଡ଼ା ବିରହିଣୀ କପୋତୀ । (୧)

ଅମାବାସ୍ୟାର ମୁଁ କଇଁ-
ମରୁପଥ ଯାତ୍ରୀ,
ବଇଶାଖୀ ତଟିନୀ ମୁଁ-
ଭଙ୍ଗା ବୀଣା ତନ୍ତ୍ରୀ ।
ପ୍ରିୟର ସେ ପ୍ରତାରଣା ମୁହିଁ ରଖିଥିବି ସାଇତି ।
ମଉଳା ମୁଁ କୃଷ୍ଣ ଚୂଡ଼ା ବିରହିଣୀ କପୋତୀ । (୨)





ଅଜାଣତେ ଗଢ଼ି ଉଠଇ ସଂପର୍କ -
ରୂପ ନେଇ ଭିନ୍ନ ଭିନ୍ନ,
ସଂପର୍କର କେବେ ଶେଷ ହୁଏ ନାହିଁ -
ତାକୁ କେ କରିବ ଛିନ୍ନ ? (୦)

ଶରୀର ସହିତ ଆତ୍ମାର ସଂପର୍କ -
ଫଗୁଣ ସହିତ ଫୁଲ,
ଚଇତି ସହିତ ଶୀତଳ ପବନ -
ମହୁରୀ ସହିତ ଢୋଲ ।
ପୃଥିବୀ ସହିତ ସାଗର ଯେମିତି -
ଆକାଶ ସହିତ ଜହ୍ନ । (୧)

ପ୍ରକୃତି ସହିତ ପୁରୁଷ ସଂପର୍କ -
ଶିବଙ୍କ ସହିତ ଶକ୍ତି,
ଚନ୍ଦନ ସହିତ ଗନ୍ଧର ସଂପର୍କ -
ଶ୍ରଦ୍ଧାର ସହିତ ଭକ୍ତି ।
ସଂପର୍କରେ ଚାଲେ ଟଣା ଭିଡ଼ା ଯଥା-
ବିବେକ ସହିତ ମନ । (୨)






ଯାହା ପାଇଁ ମନ୍ଦିରରେ ଜାଳିଲି ଦୀପାଳି,
ସିଏ ଆଜି କହେ ତୁମେ ମୋତେ ଦେଲ ଜାଳି ।
(ଘୋଷା)

ମହାଦେବେ ଚଢ଼ାଇଲି ଲକ୍ଷେ ବେଲପତ୍ର,
ମହାମାୟାଙ୍କୁ ଡାକିଲି ଗାଇ ମହାମନ୍ତ୍ର ।
ଜଗନ୍ନାଥଙ୍କୁ ଦେଲି ମୁଁ-
ତୁଳସୀର ମାଳି ।
ଯାହା ପାଇଁ ମନ୍ଦିରରେ ଜାଳିଲି ଦୀପାଳି । (୧)

ନଡ଼ିଆ ଭାଂଗିଲି ନେଇ ଗଣେଶ ପାଖରେ,
ସୂରୁଜେ ଜଳ ଟେକିଲି ପୋଖରୀ ତୁଠରେ ।
ଚଣ୍ଡୀଙ୍କୁ ତା' ପାଇଁ ଯାଚି-
ଥିଲି କେତେ ବଳି ।
ଯାହା ପାଇଁ ମନ୍ଦିରରେ ଜାଳିଲି ଦୀପାଳି । (୨)

ଚନ୍ଦନ ଲେପିଲି ସିନା ତା' ଶୀତଳ ପାଇଁ,
ସନ୍ନିପାତ ହେବ ବୋଲି ଜାଣିଲି ବା କାହିଁ ?
ମୋ ପାଇଁ ସେ ଏତେ ସରି-
କହେ ବୁଲି ବୁଲି ।
ଯାହା ପାଇଁ ମନ୍ଦିରରେ ଜାଳିଲି ଦୀପାଳି । (୩)





କହ ଲୋ ତଟିନୀ ସାଗର ବୁକୁରେ-
ଅଜାଡ଼ି ଦେଇ ତୋ ତନୁ,
କି ବା ସୁଖ ପାଉ ଛାଡ଼ି ନିଜ ଗୁଣ-
ପଛ କଥା ଭୁଲି ମନୁ ।
(ଘୋଷା)

କହ ସୂର୍ଯ୍ୟମୁଖୀ ହେଉ ସତେ ସୁଖୀ-
ସବିତାକୁ ଚାହିଁ ଚାହିଁ,
ଆକାଶେ ଦେଖିଲେ ଜହ୍ନର ଜ୍ୟୋଛନା-
ଚେଇଁ ଉଠୁ କିଆଁ କଇଁ ।
କହିଁକି ଗୋଲାପ କଳା ଭଅଁରକୁ-
ମଧୁ ଦେଉ ଜାଣୁ ଜାଣୁ ।
କହ ଲୋ ତଟିନୀ ସାଗର ବୁକୁରେ-
ଅଜାଡ଼ି ଦେଇ ତୋ ତନୁ । (୧)

କହ ତ ବରଷା ବାଦଲ ସାଥୀରେ-
ଭାସି ଭାସି ଆକାଶରେ,
ନାଚି ନାଚି ପୁଣି ଓହ୍ଲାଇ ଆସୁ ତୁ-
ପାଇଲୁ କି ସୁଖ ବାରେ ।
ତୁମରି ପଥରେ ପଥିକ ହେଲି ମୁଁ-
ହାରିବି ନାହିଁ ତ ମାନ ? (୨)





ଲାଜେଇ ଲାଜେଇ ଚାଲି ଗଲେ କେହି-
ଦେଖିବାକୁ ହୁଏ ମନ,
ବାଙ୍କ ଚାହାଣିରେ କି ମନ୍ତର ଥାଏ-
ମନ କରେ ଛନ ଛନ ।
(ଘୋଷା)

ବନସ୍ତରେ ସିନା ଲାଗେ ଡର ଡର,
ଉପବନ ଦିଏ ସୁଖ,
ଫୁସୁରୁ ଫାସର କଥା ହେଉଥିଲେ-
ପରକୁ ଲାଗଇ ଦୁଃଖ ।
ଅଳପ ହେଲେ ବି ମିଠା କଡ଼ା ପଦେ-
ଆଣି ଦିଏ ଶିହରଣ ।
ଲାଜେଇ ଲାଜେଇ ଚାଲି ଗଲେ କେହି-
ଦେଖିବାକୁ ହୁଏ ମନ । (୧)

ଦିନ ମଧ୍ୟେ ସାର ଗୋଧୂଳି ବେଳାର-
ମୁହଁ ଲୁଚା ଅନ୍ଧକାର,
ଝାପସା ଝାପସା ଜ୍ୟୋଛନା ରାତିଟା-
ମନକୁ ଲାଗେ ମଧୁର ।
ମୁରୁକି ହସଟି ଭେଳିକି ଲଗାଇ-
ଭାଙ୍ଗି ଦିଏ ଅଭିମାନ ।
ଲାଜେଇ ଲାଜେଇ ଚାଲି ଗଲେ କେହି-
ଦେଖିବାକୁ ହୁଏ ମନ । (୨)





ମହୁମାଛି ମନ ତୁମ ଭଲ ପାଇ ଜାଣନା,
ଭଲ ପାଇ ଭୁଲି ଯାଅ  ମନ କଥା ଶୁଣନା (ଘୋଷା)

କଥା ଦେଇ ନିଜ କଥା -
ରଖି ଦେଲ  ଗୋପନ,
ମୋ ଆଖିରେ ଭରି ଦେଲ-
କେତେ ମିଛ ସପନ ।
ମୋତେ ପଛେ ଭୁଲି ଯାଅ-
ମୋ ପ୍ରେମକୁ ଭୁଲନା ।
ମହୁମାଛି ମନ ତୁମ ଭଲ ପାଇ ଜାଣନା ।       (୧)

କି  ବେଳାରେ ତୁମେ ମୋତେ-
ଦେଲ ପ୍ରୀତି ପରଶ,
ଆଶା ଭରସା ଦେଖାଇ-
କର ଏବେ ନିରାଶ ।
କଳନା ମୁଁ  କରି ପାରୁ ନାହିଁ ତୁମ ଛଳନା ।
ମହୁମାଛି ମନ ତୁମ ଭଲ ପାଇ ଜାଣନା ।       (୨)





କିଏ କହେ କେହି ନାହିଁ ଜୀବନର ସାଥୀ ହୋଇ
ଶୂନ୍ୟତାର ପଥରେ ମୁଁ ପଥିକ,
ଆକାଶର ନୀଳ ପିଇ ସାଗରର ଢେଉ ଗଣେ-
ସାଥୀହୀନ କଳଙ୍କିତ ନାୟକ ।
(ଘୋଷା)

ଚାହିଁଛି ମୁଁ ଥିବି ଚାହିଁ ଚାତକ ବରଷା ପାଇଁ-
କେବେ ହେଲେ କେହି ଜଣେ ଆସିବ,
ପୀରତିର ଉପବନେ ବାସର ମହକ ଦେଇ-
ପହିଲି ଆଷାଢ ମଧୁ ଢାଳିବ ।
ବୋଇତ ମେଲିଛି ଆଜି ସପନରେ ହଜି ହଜି-
ସାଜିଛି ମୁଁ ପୀରତିର ବଣିକ ।
କିଏ କହେ କେହି ନାହିଁ ଜୀବନର ସାଥୀ ହୋଇ
ଶୂନ୍ୟତାର ପଥରେ ମୁଁ ପଥିକ । (୧)

ଗାଉଛି ମୁଁ ଗାଉଥିବି ମଳୟ ପବନ ହୋଇ
ବସନ୍ତର ସୁରେ ସୁର ମିଳାଇ,
ମିଳନ ସଂଗୀତ ଶୁଣି ନୀରବ ହେଲେ ମାନିନୀ-
ଛଳନାର ମାୟାଜାଲ ବିଛାଇ ।
ମଧୁର ସଂଗୀତ ଗାଇ ଭାଂଗିବି ତା' ଅଭିମାନ-
ସାଜିଥିବି ମୁଁ ଦରଦୀ ଗାୟକ ।
କିଏ କହେ କେହି ନାହିଁ ଜୀବନର ସାଥୀ ହୋଇ
ଶୂନ୍ୟତାର ପଥରେ ମୁଁ ପଥିକ । (୨)

  



ଦେଖିଛି , କେତେ ସପନ-
ସବୁ ଆଜି ପରି ମିଠା ନୁହେଁ,
ଶୁଣିଛି , ମୁଁ କେତେ ଗୀତ-
ଆଜି ଦରଦ ଭରିଛି କିଏ ?
(ଘୋଷା)

ଫୁଟିଛି, ଆଗରୁ କେତେ -
ସବୁ ଫୁଲ ନୁହେଁ ଆଜି ପରି ,
ମୋର ବଗିଚାରେ କିଏ -
ରଂଗ ଆଉ ବାସ ଦେଲା ଭରି ?
ବହିଛି କେତେ ପବନ-
ଆଜି କିନ୍ତୁ ଚଇତାଳି ବହେ ।
ଦେଖିଛି କେତେ ସପନ-
ସବୁ ଆଜି ପରି ମିଠା ନୁହେଁ । (୧)

ଆକାଶେ ଥାଇ ଜ୍ୟୋଛନା-
ଲାଗେ ନାହିଁ ତ ଏତେ ଶୀତଳ !
ହୋଇଛି ମନ ଉଛନ୍ନ-
ଆଜି ପରି ହୋଇନି ପାଗଳ ।
ଆଗରୁ ଥିଲି ମୁଁ ଏକା-
ମନ ମୋର ଏବେ ସାଥୀ ଚାହେଁ । (୨)







## ୫୩

ଫୁଲଟିଏ ଦେବି ପ୍ରିୟା
ସେ ଗୋଲାପ ନୁହେଁ , ମଲ୍ଲୀ ଚମ୍ପା ନୁହେଁ-
ପ୍ରୀତି ଉପବନ ଫୁଲ ତାହା ।
(ଘୋଷା)

ପ୍ରେମ ରେଣୁ ଭରା ସେହି ଫୁଲେ,
ମିଳନ କେଶର ତା'ର ଝୁଲେ ।
ସେ ଫୁଲକୁ ଛୁଇଁ ଦେଲେ, ହେବ ପ୍ରୀତି ଜର ।
ପୁଲକିତ ତନୁ ମନ,
ହେଉଥିବ ଛନ ଛନ ।
କହୁଥିବ ତୁମେ ନେଇଯାଅ ପ୍ରିୟ-
ଦେଖାଇ ପୀରତି ରାହା ।
ଫୁଲଟିଏ ଦେବି ପ୍ରିୟା । (୧)

ସେ ଫୁଲର ମହୁଆ ମହକ,
ଜଗାଇବ ଅଜଣା ପୁଲକ ।
ସେ ପୁଲକେ ହଜିଯିବ, ମଜି ଯିବ ତୁମେ-
ଲାଗିବ ତୁମକୁ ନୂଆ ନିଶା,
ଓଠେ ଭରି ଥିବ ନୂଆ ଭାଷା ।
କହୁଥିବ ତୁମେ ରହି ଯାଅ ପ୍ରିୟ-
ତୁମେ ଏକା ମୋର ସାହା ।
ଫୁଲଟିଏ ଦେବି ପ୍ରିୟା । (୨)







ମନ କହୁଥିଲା ମନଟିଏ ଚାହେଁ-
ସେ ମନେ ମିଶିବା ପାଇଁ,
ଆଖି କହୁଥିଲା ଆଖିଟିଏ ପାଇ-
ଲାଖି ଯାଇଥିବି ମୁହିଁ ।
(ଘୋଷା)

ଛାତି କହୁଥିଲା ତାତିର ପରଶ-
ଆହା କି ମଧୁର ସତେ '?
ଦେହ କହୁଥିଲା ଆଉ ଏକ ଦେହେ-
ବାନ୍ଧି ରଖିଦିଅ ମୋତେ ।
ନିଦ କହୁଥିଲା ଦେଖିବି ସପନ-
କେତେ ଯୁଗ ଯୁଗ ପାଇଁ ।
ମନ କହୁଥଲା ମନଟିଏ ଚାହେଁ-
ସେ ମନେ ମିଶିବା ପାଇଁ । (୧)

ନଦୀ କହୁଥିଲା ତା'ର ମନ ପ୍ରାଣ-
ଅଳିରେ ଅଜାଡି ଦେବ,
ଫୁଲ କହୁଥିଲା ତା'ର ମନ ପ୍ରାଣ-
ଅଳିରେ ଅଜାଡ଼ି ଦେବ ।
କଇଁ କହୁଥିଲା ଜହ୍ନର ପଥକୁ-
ରହିଥିବି ଚାହିଁ ଚାହିଁ ।
ମନ କହୁଥଲା ମନଟିଏ ଚାହେଁ-
ସେ ମନେ ମିଶିବା ପାଇଁ । (୨)

  



ଲୁହ ତୁମେ ସତେ କେଡେ ନିଜର ମୋ-
ବନ୍ଧୁରେ ତୁଳନା ନାହିଁ,
ପବିତ୍ର ତୁମେ ହେ ତୁମରି ପରଶେ -
ସବୁ ଦୁଃଖ ଯାଏ ଧୋଇ ।
(ଘୋଷା)

ହୃଦୟେ ଜାଗିଲେ ଅତୀତର ସ୍ମୃତି -
ଘାରି ହୁଏ ମନେ ମନେ,
କହି ଦିଅ ତୁମେ ଅକୁହା କାହାଣୀ-
ଦୁର୍ବଳର କାନେ କାନେ ।
ଅସହାୟ ପ୍ରାଣେ ସାହା ହୁଅ ପୁଣି -
ଗୁପତରେ ଛୁଇଁ ଛୁଇଁ ।
ଲୁହ ତୁମେ ସତେ କେଡ଼େ ନିଜର ମୋ-
ବନ୍ଧୁରେ ତୁଳନା ନାହିଁ । (୧)

ଶକତିରେ କିଏ ତୁମ ସରି ହେବ-
ପଥରକୁ କର ପାଣି,
ତୁମ ଆଗମନେ ଦୂର ହୁଏ ରାଗ-
ଅନୁତାପ ଆସେ ପୁଣି ।
ତୁମରି ପରଶେ ଶୁଭ ଚିନ୍ତା ଆସେ-
ନୂଆ କଥା ଦିଅ କହି ।
ଲୁହ ତୁମେ ସତେ କେଡେ ନିଜର ମୋ-
ବନ୍ଧୁରେ ତୁଳନା ନାହିଁ । (୨)







ତୁମରି ହସିଲା ମୁଖେ ଫୁଟେ ଫୁଲ କେତେ ,
ତୁମ ଛନ୍ଦମୟ ଚାଲି ଝରଣାଟି ସତେ ।
(ଘୋଷା)

ତୁମ ଚାହାଣୀରେ ଭରା ସତେ କି ମନ୍ତର,
ଓଠରୁ ଫିଟିଛି ତୁମ ଅମୃତର ଝର ।
ସରଗ ଚାନ୍ଦ କି ଆଜି -
ପାଇଛି ମୋ ହାତେ ।
ତୁମରି ହସିଲା ମୁଖେ ଫୁଟେ ଫୁଲ କେତେ । (୧)

ଭାସିଲା ଭାସିଲା ଆଖି ତୁମ ଢଳ ଢଳ,
ଦେହଟି ଗଢ଼ା କି ସତେ ଗୋଟିଏ ଚାଉଳ ।
ଯୁଗ ଯୁଗ ଚାହିଁଥିବି-
ଦେଖା ଦେବ ମୋତେ ।
ତୁମରି ହସିଲା ମୁଖେ ଫୁଟେ ଫୁଲ କେତେ । (୨)

  



ଛୁଇଁ ଦେଲି ଥରେ ଲାଜକୁଳି ଲତା-
ସରମରେ ଗଲା ଜଳି,
ଚାହିଁ ଦେଲି ଥରେ ଗଁଗ ଶିଉଳିକୁ-
ଲାଜରେ ଗଲା ଝାଉଁଳି ।
(ଘୋଷା)

କହି ଦେଲି ଥରେ ଶୁଆର କାନରେ-
ମୋ ପ୍ରିୟାର ଶୁଭ ନାମ,
ଘୋଷି ହୁଏ ଶୁଆ କି କହିବି ଆହା-
ସାରିଦେଲା ମୋର ମାନ ।
କୋଇଲିକୁ ଥରେ କହିଥିଲି ବୋଲି-
ଗାଉଛି ମୋ ପ୍ରିୟା ଭଳି ।
ଛୁଇଁ ଦେଲି ଥରେ ଲାଜକୁଳି ଲତା-
ସରମରେ ଗଲା ଜଳି । (୧)

କହିଥିଲି ଥରେ ମେଘର ହାତରେ-
ତାକୁ ଭାରି ଭଲପାଏ ,
ଯାଇଛି ସେ ମେଘ ଫେରିନାହିଁ ଆଉ-
ଆକାଶକୁ ଚାହିଁ ରହେ ।
ପଚାରେ କେତେ ମୁଁ ମୁଁ କହ ରାଜ ହଂସୀ-
ଦେଖିଛୁ ମୋ ପ୍ରିୟା ଚାଲି ।
ଛୁଇଁ ଦେଲି ଥରେ ଲାଜକୁଳି ଲତା-
ସରମରେ ଗଲା ଜଳି । (୨)

  



ମୋ ପାଇଁ ତୁମରି ଭାଷା-
ସତେ ପ୍ରେମ କାହାଣୀ,
ତୁମରି କଣ୍ଠର ସ୍ୱର-
ପୀରତିର ରାଗିଣୀ ।
(ଘୋଷା)
ହସରେ ତମର ଝରେ-
ହୀରା ମୋତି ମାଣିକ,
ଚାହାଣିରେ ଭରିଦେଲା-
କିଏ ଏତେ କୁହୁକ ?
ଚାଲି ଯାଉଥିଲେ ତୁମେ-
ଲାଗେ ଗଜ ଗମନୀ ।
ମୋ ପାଇଁ ତୁମରି ଭାଷା-
ସତେ ପ୍ରେମ କାହାଣୀ । (୧)

ଛନ୍ଦ ଭରା କଥା ତୁମ-
ମନ୍ଦ ମନ୍ଦ ହାସରେ,
ମୋର ମନ ବାନ୍ଧିହୁଏ-
ତୁମ ପ୍ରୀତି ଫାଶରେ ।
ମଉନେ ବସିଲେ ଲାଗେ-
ରାଧା ଅଭିମାନିନୀ ।
ମୋ ପାଇଁ ତୁମରି ଭାଷା-
ସତେ ପ୍ରେମ କାହାଣୀ । (୨)

  



ଛଳନାରେ ଗଢି  ବାଲିଘର ତୁମେ-
ଛାତିକୁ କରିଲ ଟାଣ,
କାଚ ଘରେ ଥାଇ  ଟେକା ପକାଇଲ-
କୁହ ଆଉ କେତେ ଦିନ ?
(ଘୋଷା)
ଢଳି ପଡ଼ିଲାଣି  ତୁମ ବାଲିଘର-
ମାଟିରେ ଯାଉଛି ମିଶି,
କାଚ ଘର ଭାଂଗି  ହେବ ଚୂରମାର-
ତଥାପି ପାରୁଚ ହସି !
କାଗଜ ଫୁଲର  ମହକ ଶୁଙ୍ଘାଇ-
କିଣି ପାରିବ କି ମନ ?
ଛଳନାରେ ଗଢି  ବାଲିଘର ତୁମେ-
ଛାତିକୁ କରିଲ ଟାଣ,  (୧)

ବୁଝି ପାରିଲନି  ମୋ ମନର କଥା -
ଚିହ୍ନି ପାରିଲନି ମୋତେ,
ଛଳନାରେ ତୁମେ  କଳନା କରିଲ-
ନିଜର ଓଜନ କେତେ ।
ମନକୁ କାହାର  କିଣି ହୁଏ ନାହିଁ-
ପକାଇ ହଜାରେ ଦାଣ ।
ଛଳନାରେ ଗଢି  ବାଲିଘର ତୁମେ-
ଛାତିକୁ କରିଲ ଟାଣ,  (୨)

  



ଫୁଲ ଶେଯ ପରେ ଦେଖିଲି ସପନ-
ରଜାଝିଅ ସୁକୁମାରୀ ।
ଓଠରୁ ତାହାର ଭାଷା ନୁହେଁ ସେ ତ -
ମଧୁ ପଡୁଥିଲା ଝରି ।
(ଘୋଷା)

ନେଇ ଗଲା ସିଏ ହାତ ଧରି ମୋର -
ସାତ ସାଗରକୁ ଡେଇଁ,
ବସାଇଲା ନେଇ ରତନ ପଲଙ୍କେ-
ମିଠା ମିଠା କଥା କହି ।
ହଜି ଗଲି ମୁହିଁ ମଜିଗଲି ମୁହିଁ-
ସତେ କ୍ଷୀର ନୀର ପରି ।
ଫୁଲ ଶେଯ ପରେ ଦେଖିଲି ସପନ-
ରଜାଝିଅ ସୁକୁମାରୀ । (୧)

ଧରି ତା' ଚିବୁକ ହୋଇଲି ଅବାକ-
ରହିଗଲି ମୁଖ ଚାହିଁ,
ଜାଣି ନ ପାରିଲି ଧରି ନ ପାରିଲି -
ବନ୍ଧନୁ ଗଲା ଉଭେଇ ।
ସପନ ଭାଙ୍ଗି ସେ ଚାଲିଗଲା ସତେ-
ମୋତେ ଅସହାୟ କରି ।
ଫୁଲ ଶେଯ ପରେ ଦେଖିଲି ସପନ-
ରଜାଝିଅ ସୁକୁମାରୀ । (୨)

  




କେତେ ଫୁଲ ଫୁଟି ଯାଉଛି ମଉଳି-
ମହକ ଯାଏ ଉଭେଇ ,
କେତେ ଯେ ଦେବତା ଅପୂଜା ରହନ୍ତି-
ସେହି ଫୁଲଟିଏ ପାଇଁ ।
(ଘୋଷା)

ଫୁଲଟିଏ ଥିଲେ ଦେବତା ଚରଣେ,
ସଫଳ ଲଭଇ ସେ ଫୁଲ ଜୀବନେ ।
ମହକ ତାହାର ପର ପାଇଁ ସିନା-
ବିତରେ ପବନ ହୋଇ ।
କେତେ ଯେ ଦେବତା ଅପୂଜା ରହନ୍ତି-
ସେହି ଫୁଲଟିଏ ପାଇଁ । (୧)

ଫୁଲର ବାସନା ରଙ୍ଗ ଅଭିସାରେ,
ଦେବତା ପରାଣ ପ୍ରୀତିରେ ଉଛୁଳେ ।
ସେ ଫୁଲ ବିହୁନେ ଚନ୍ଦନର ଲେପ-
ଜଳି ଉଠେ ତାପ ଦେଇ ।
କେତେ ଯେ ଦେବତା ଅପୂଜା ରହନ୍ତି-
ସେହି ଫୁଲଟିଏ ପାଇଁ । (୨)







୬୨

ହଜିଲା ଦରବ  ଖୋଜି ହେଲେ ସିନା-
କେବେ ହେଲେ ମିଳିଯାଏ,
ମନ ପରି ଚିଜ ହଜେଇଛି ଯିଏ-
ତାକୁ ଖୋଜି ଦେବ କିଏ ?
(ଘୋଷା)

କ୍ଷୀର ଆଉ ନୀର ନଦୀ ଆଉ ଝର,
ମିଶିଗଲେ ଥରେ ହୁଏ ଏକାକାର ।
ଯେତେ ବୁଝେଇଲେ ପର କରି ଦେଲେ-
ଆଉ  କି ଅଲଗା ହୁଏ ?
ମନ ପରି ଚିଜ ହଜେଇଛି ଯିଏ-
ତାକୁ ଖୋଜି ଦେବ କିଏ ?        (୧)

ମନରେ ମନକୁ ଦେଲା ଯେ ମିଶାଇ,
ଖୋଜିବସେ  ସିନା ଆଉ ପାଏ ନାହିଁ ।
ମନ ପ୍ରାଣକୁ ଯେ ବିକିଦେଲା ଥରେ-
ଆଉ କି ସେ ଫେରିପାଏ  ?        (୨)

  



ତୁମ ପାଇଁ ସିନା ବିଛେଇ ଥିଲି ମୁଁ-
ପୀରତିର ମାୟାଜାଲ,
ସେ ଜାଲରେ ପଡ଼ି ଭିଡ଼ି ନେଇ ମୋତେ-
ଅସହାୟ କରି ଦେଲ ।
(ଘୋଷା)

ତୁମରି ଆସନ ମୋର ହୃଦୟରେ-
ଯତନେ ଥିଲି ସଜେଇ,
ପ୍ରୀତି ସୁଧା ଆଶେ ମୋ ହସ୍ତ ଅଞ୍ଜଳି-
ଦେଇଥିଲି ମୁଁ ପତେଇ ।
ଭାବୁଥିଲି ମୁହିଁ ବୋଲି ମନ ଚୋର-
ତୁମେ ମୋତେ ଚୋରି କଲ ।
ତୁମ ପାଇଁ ସିନା ବିଛେଇ ଥିଲି ମୁଁ-
ପୀରତିର ମାୟାଜାଲ । (୧)

ସପନପୁରୀରେ ଘୂରି ବୁଲୁଥିଲି-
ଦେଖିବି ତୁମର ଛବି,
ଅଳକା ପୁରୀର ପାରିଜାତକୁ ମୁଁ-
ପାଇବି ନଥିଲି ଭାବି ।
ମୋ ମନ ମରୁରେ ସବୁଜ ସୁଷମା-
ସତେ ଅବା ଭରି ଦେଲ ।
ତୁମ ପାଇଁ ସିନା ବିଛେଇ ଥିଲି ମୁଁ-
ପୀରତିର ମାୟାଜାଲ । (୨)

  



ହୋଇଯାଏ ଭୁଲ କେବେ-
ଜାଣି କେବେ ନଜାଣି ,
ଭୁଲ କରିବାରେ ସତେ-
ସୁଖ କେତେ କେଜାଣି ?
(ଘୋଷା)

ଜହ୍ନ ଜାଣେ ତା'ର ପ୍ରିୟା ଆକାଶର ତାରା,
କଇଁକୁ ଦେଖି ସେ ପୁଣି ହୁଏ ପଥ ହରା ।
ଭୁଲ କରେ ସାଗରରେ-
ମିଶି ଯାଇ ତଟିନୀ ।
ହୋଇଯାଏ ଭୁଲ କେବେ-
ଜାଣି କେବେ ନଜାଣି । (୧)

ସବିତା ସରୋଜ ପ୍ରୀତି କାହାକୁ ବା ଅଜଣା,
ମହୁମାଛି ମହୁ ପାଇଁ ଦିଏ କେତେ ଗଞ୍ଜଣା ।
ଭ୍ରମରକୁ ପ୍ରୀତି ଦେଇ-
ଭୁଲ କରେ ତଟିନୀ ।
ହୋଇଯାଏ ଭୁଲ କେବେ-
ଜାଣି କେବେ ନଜାଣି । (୨)

  




ବଣ ମଲ୍ଲିକା ଗୋ ବଣ ମଲ୍ଲୀ ତୁମେ-
ବନସ୍ତେ ଫୁଟିଛ ଯାଇ ,
ମହକ ତୁମର କରିଛି ପାଗଳ-
ଖୋଜି ଖୋଜି ପାଉ ନାହିଁ ।
(ଘୋଷା)

ହେଉ ପଛେ ତୁମ ପଥ କଣ୍ଟାମୟ,
ବାସନା ତୁମର ଦେଇଛି ଅଭୟ ।
ତୋଳି ଆଣିବି ମୁଁ ଥାଉ ଯେତେ ବାଧା-
ଜୀବନେ ବାଜି ଲଗାଇ ।
ବଣ ମଲ୍ଲିକା ଗୋ ବଣ ମଲ୍ଲୀ ତୁମେ-
ବନସ୍ତେ ଫୁଟିଛ ଯାଇ । (୧)

ଫୁଟି ଅନ୍ଧକାରେ ଝରିପଡ଼ ବନେ,
କୁହ ତ ମଲ୍ଲିକା ସତେ ସୁଖୀ ତୁମେ ?
ତୁମ ପାଶେ ମଲ୍ଲୀ କରୁଛି ମୁଁ ଅଳି-
ସେ ପଥ ଦିଅ ବତାଇ ।
ବଣ ମଲ୍ଲିକା ଗୋ ବଣ ମଲ୍ଲୀ ତୁମେ-
ବନସ୍ତେ ଫୁଟିଛ ଯାଇ । (୨)







ବିଭାବରୀ ସାଜି ସପନ ରାଇଜେ-
ଗଢ଼ିଥିଲି ବାଲିଘର,
ବଇଶାଖୀ ସିନା ଫଲଗୁ ଛଡ଼ାଇ -
କରିଦେଲା ସାତପର ।
(ଘୋଷା)

ଯାଇଛି ମୁଁ ହାରି ଖେଳି ଲୁଚକାଳି,
ଜିତିବା ଲୋକକୁ ଝୁରିହେବି ବୋଲି ।
ଲୋତକ ସାଗରେ ଜୀବନ ନଉକା-
ଯିବ ଅବା କେତେ ଦୂର ?
ବିଭାବରୀ ସାଜି ସପନ ରାଇଜେ-
ଗଢିଥିଲି ବାଲିଘର । (୧)

କୁଆଁରୀ ବୟସ ଡେଣା ଝାଡ଼ି ଝାଡ଼ି,
ଭାବିଥିଲି ମନେ ଯିବି ଉଡ଼ି ଉଡ଼ି ।
ଆକାଶେ ଉଡ଼ିବା ଶିଖିଗଲି ଯେବେ-
ଛିଡ଼ିଗଲା ଡେଣା ମୋର ।
ବିଭାବରୀ ସାଜି ସପନ ରାଇଜେ-
ଗଢିଥିଲି ବାଲିଘର । (୨)

  



ସପନରେ ମୋତେ ଛୁଇଁ ଦେଇଗଲା-
କିଏ ସେ ରାଜ କୁମାର,
ଦେଖାଇଲା ମୋତେ ଆଶାର ଆଲୋକ-
ଜଗାଇ ମନେ ଜୁଆର ।
(ଘୋଷା)

ତଡ଼ାଗରେ ଥାଇ ଜହ୍ନ ଦେଖି ନାହିଁ-
କୁଆରୀ ମୁଁ କଇଁ ଫୁଲ,
ଭାସି ଭାସି ଯାଏ ପହିଲି ସେଘ ମୁଁ-
ଆକାଶେ ଭସା ବାଦଲ ।
ଜାଗିଛି ବାସନା ଦେଖିବି ଜ୍ୟୋଛନା-
ବରଷିବି ହୋଇ ଝର ।
ସପନରେ ମୋତେ ଛୁଇଁ ଦେଇଗଲା-
କିଏ ସେ ରାଜ କୁମାର । (୧)

ଭୁଲି ମୁଁ ଯାଇଛି ମୋର ପରିଚୟ-
ପାରୁନି ନିଜକୁ ଚିହ୍ନି,
ଚାଲି ମୁଁ ଆସିଛି ଅଜଣା ରାଇଜେ-
ସବୁ କଥା ଜାଣି ଜାଣି ।
ଯୁଗ ଯୁଗ ପାଇଁ ରହିଥିବି ଚାହିଁ -
ପାଇବି ପରଶ ତା'ର ।
ସପନରେ ମୋତେ ଛୁଇଁ ଦେଇଗଲା-
କିଏ ସେ ରାଜ କୁମାର । (୨)

  




ମୋ ଜୀବନେ ତୁମେ  ପହିଲି ସକାଳ-
ଦେଖାଇଛ ସୂର୍ଯ୍ୟୋଦୟ,
ବିକି ଦେଇଛି ମୁଁ  ମୋର ମନ ପ୍ରାଣ-
ବନ୍ଧା ଦେଇଛି ହୃଦୟ ।
(ଘୋଷା)

ଫଗୁଣର ତୁମେ  ଚଇତାଳି ହୋଇ,
ବହିଗଲ ଯେବେ  ମୋତେ ଛୁଇଁ ଛୁଇଁ ।
ମଳୟ ପରଶ  କରାଇ ମୋ ବୁକେ-
ଜୀବନ କଲ ଅଥୟ ।
ମୋ ଜୀବନେ ତୁମେ  ପହିଲି ସକାଳ-
ଦେଖାଇଛ ସୂର୍ଯ୍ୟୋଦୟ ।  (୧)

ଭାବି ନଥିଲି ମୁଁ  ଭୁଲି ଯିବ ସତେ,
ସଜାଇବ ତୁମେ  ଝରାଫୁଲ ମୋତେ ।
ମୋତେ ଭୁଲିଯାଅ  ମୋ ପ୍ରେମକୁ ନୁହେଁ-
ସାକ୍ଷୀ ରଖି ଆଖି ଲୁହ ।
ମୋ ଜୀବନେ ତୁମେ  ପହିଲି ସକାଳ-
ଦେଖାଇଛ ସୂର୍ଯ୍ୟୋଦୟ ।  (୨)








ଆଖିରେ ତୁମର ଭରିଛି କୁହୁକ-
ଚାହାଣି କପଟ ଭରା ,
ତଥାପି ତୁମକୁ ନଦେଖିଲେ ଦିନେ-
ଲାଗେ ଯୁଗଟାଏ ପରା ।
(ଘୋଷା)

କଥା କହୁଥାଅ ବଙ୍କେଇ ବଙ୍କେଇ,
ଭଲ ପାଅ ବୋଲି ଜାଣି ପାରେ ନାହିଁ ।
ତଥାପି ତୁମରି ହାତରେ କାହିଁକି-
ବାର ବାର ଦିଏ ଧରା ।
ଆଖିରେ ତୁମର ଭରିଛି କୁହୁକ-
ଚାହାଣି କପଟ ଭରା । (୧)

ଜଳୁଛ ତ ତୁମେ ନିଆଁ ପିଣ୍ଡ ହୋଇ,
ଜାଣେ ସେ ନିଆଁରେ ଜଳିଯିବି ମୁହିଁ ।
ସବୁ ଜାଣି ଜାଣି କାହିଁକି କେଜାଣି-
ହୋଇଯାଏ ଦିଗହରା ।
ଆଖିରେ ତୁମର ଭରିଛି କୁହୁକ-
ଚାହାଣି କପଟ ଭରା । (୨)

  



ତୁମ ଇସାରାରେ ତୁମ ଭରସାରେ -
ବାଛିଲି ଜୀବନ ସାଥୀ,
ତୁମରି ପରଶେ ସରଗର ସୁଖ -
ପାଉଛି ମୁଁ ଦିନରାତି ।
(ଘୋଷା)

ତୁମେ ଶିଖାଇଲ ପୀରତିର ଭାଷା -
ଜଗାଇ ମନେ କାମନା,
ତୁମେ ଦେଖାଇଲ ଅଜଣା ବାଟକୁ -
ଆକାଶୁ ଜହ୍ନ ଜ୍ୟୋଛନା ।
ତୁମେ ଶୁଣାଇଲ ଅଶୁଣା ସଂଗୀତ -
ପ୍ରେମର ପହିଲି ଗୀତି ।(୧)

ତୁମେ ନଚାଇଲ ମନକୁ ମୋହର -
ତାଳ ସଂଗେ ଦେଇ ସୁର,
ତୁମେ ବସାଇଲ ହୃଦ ସିଂହାସନେ -
ସବୁ ଭୟ କରି ଦୂର ।
ତୁମରି ପାଇଁ ମୋ ଜୀବନ ଆକାଶେ -
ପାହିଛି ଅନ୍ଧାର ରାତି ।(୨)

  



ମନ ବଗିଚାରୁ ଫୁଲଟିଏ ତୋଳି-
ଗଭାରେ ଦିଅ ହେ ପ୍ରିୟ ,
ତୁମରି ହସରୁ ରଂଗ ଟିକେ ନେଇ-
ମୋ ଓଠରେ ବୋଳି ଦିଅ ।
(ଘୋଷା)

ମୋ ଦୁଇ ନୟନେ ଭରିଛି ସପନ,
ପୁଲକିତ ହୁଏ ମୋର ତନୁ ମନ ।
ଭୁଲିଛି ଦୁନିଆ ସବୁଦିନ ପାଇଁ -
ନୂଆ ପଥେ ଘେନି ଯାଅ ।
ତୁମରି ହସରୁ ରଂଗ ଟିକେ ନେଇ-
ମୋ ଓଠରେ ବୋଳି ଦିଅ । (୧)

ଚଞ୍ଚଳ କରାଅ ପାଦକୁ ମୋହର,
ନାଚିବି ମୁଁ ତାଳେ ତାଳେ ନୂପୁରର ।
ମୋ ମନ ବୀଣାର ତନ୍ତ୍ରୀ ଦୋହଲାଇ-
ନୂଆ ସୁର ଭରିଦିଅ ।
ତୁମରି ହସରୁ ରଂଗ ଟିକେ ନେଇ-
ମୋ ଓଠରେ ବୋଳି ଦିଅ । (୨)





ଝରା ଫୁଲ ମୁଁ ଗୋ ତୁମ ବଗିଚାର-
ଫୁଟି ଝରି ଯାଉଥିବି ,
ତୁମ ଗଳା ହାର ନହେଲେ ପଛକେ-
ତୁମ ପାଦ ଛୁଉଁ ଥିବି ।
(ଘୋଷା)

ଗହନ ବନର ମୁହିଁ ସିନା ଏକ-
ନିବାରିତ ନିର୍ଝରଣୀ,
ତୁମେ ତ ସାଗର କରିଛ ମନ୍ତର-
ଟାଣି ନିଅ ଜାଣି ଜାଣି ।
ଧାଇଁବାରେ ସିନା ପାଏ ମୁଁ ଆନନ୍ଦ-
ଦିବା ନିଶି ଧାଇଁ ଥିବି ।
ଝରା ଫୁଲ ମୁଁ ଗୋ ତୁମ ବଗିଚାର-
ଫୁଟି ଝରି ଯାଉଥିବି । (୧)

ତୁମରି ସଂଗୀତେ ସୁର ହେବି ମୁହିଁ -
ତୁମରି କାବ୍ୟେ କବିତା ,
ତୁମେ ମହା ଦାରୁ କଳ୍ପବଟ ହେଲେ-
ତୁମ ଶରୀରେ ମୁଁ ଲତା ।
ତୁମରି ପାଦର ଘୁଙ୍ଗୁର ହୋଇ ମୁଁ-
ଛନ୍ଦ ତୋଳି ଦେଉଥିବି । (୨)





ସକାଳର ତୁମେ ସଜଫୁଟା ଫୁଲ-
ସଞ୍ଜ ହେଲେ ପୁଣି ମଉଳିବ ,
ଅତୀତ ଜୀବନ ସ୍ମୃତିକୁ ଜାବୁଡ଼ି
କୁହୁଳିବ ତୁମେ କୁହୁଳିବ ।
ସକାଳର ତୁମେ ସଜଫୁଟା ଫୁଲ-
ସଞ୍ଜ ହେଲେ ପୁଣି ମଉଳିବ ।
(ଘୋଷା)

ମହୁମାଛି ଆସି ମହୁଟିକେ ପାଇଁ-
କରିବନି ଅଳି କରିବନି ,
ପାଗଳ ଭଅଁର ମତୁଆଲା ହୋଇ-
ତୁମ ଚାରି ପାଖେ ଘୂରିବନି ।
ଅବଶ ଶରୀରେ ଘୂମେଇ ପଡ଼ିଲେ-
ଡେମ୍ଫରୁ ଅଲଗା ହୋଇଯିବ ।
ସକାଳର ତୁମେ ସଜଫୁଟା ଫୁଲ-
ସଞ୍ଜ ହେଲେ ପୁଣି ମଉଳିବ । (୧)

ନୂଆ ସକାଳର ରକ୍ତିମ କିରଣ-
ଆଉ ଥରେ ତୁମେ ଦେଖିବନି,
ତୁମ ଚଲାପଥେ ଦେଖିବ କେବଳ-
ପଡ଼ିବ ସାହାରା ମରୁଭୂମି ।
ହସିଲା ପାଖୁଡ଼ା ମଧୁଝରା ରୂପ-
ଧୂସର ରଙ୍ଗରେ ବଦଳିବ ।
ସକାଳର ତୁମେ ସଜଫୁଟା ଫୁଲ-
ସଞ୍ଜ ହେଲେ ପୁଣି ମଉଳିବ । (୨)





ପ୍ରୀତି ପାଗଳିନୀ ରାଧିକା ମୁହିଁ ଗୋ-
କହ୍ନାଇ ମୁରଲୀ ସୁରେ,
ପାଦ ଟିପି ଟିପି କେତେ ଛପି ଛପି -
ଯାଏ ମୁଁ ଯମୁନା ତୀରେ ।
(ଘୋଷା)
ବଡ଼ ତରବରେ ଧାଇଁ ଯାଏ ସିନା-
ନୂପୁର ହୁଏ ବଇରି,
ପାରେ ନାହିଁ ସହି ଏ' ଦୁନିଆ ମୋତେ-
ଦେଖି ମୋର ସୁଖ ଶିରୀ ।
ଡାକୁଛି କହ୍ନାଇ ଆସ ଆସ ରାଇ-
ରହିକି ପାରିବ ଧୀରେ ।
ପ୍ରୀତି ପାଗଳିନୀ ରାଧିକା ମୁହିଁ ଗୋ-
କହ୍ନାଇ ମୁରଲୀ ସୁରେ । (୧)

ଶୁଣିଲେ ମୋ କାହ୍ନା ନୂପୁର ବାଜଣା-
ତେବେ ସେ ଚିହ୍ନିବ ମୋତେ ।
କେମିତି ଖୋଲିବି ନୂପୁରକୁ ମୋର-
ବିପଦେ ପଡ଼ିଛି ସତେ ।
ସହିବି ପଛକେ ସବୁ ଅପବାଦ-
ପହଞ୍ଚିବି କାହ୍ନା ପୁରେ ।
ପ୍ରୀତି ପାଗଳିନୀ ରାଧିକା ମୁହିଁ ଗୋ-
କହ୍ନାଇ ମୁରଲୀ ସୁରେ । (୨)





୭୫

ସୁନ୍ଦର ସୁନ୍ଦର ସବୁଠୁଁ ସୁନ୍ଦର-
ମୋ ପ୍ରିୟାର ଫୁଲ ବେଶ ,
ମଧୁର ମଧୁର ସବୁଠୁଁ ସୁନ୍ଦର-
ମୋ ପ୍ରିୟାର ମନ୍ଦ ହାସ ।
(ଘୋଷା)

କୋମଳ କୋମଳ ସବୁଠୁ କୋମଳ -
ଚମ୍ପା କଢ଼ି ତା'ର ହାତ,
ବଢ଼ିଆ ବଢ଼ିଆ ସବୁଠୁଁ ବଢ଼ିଆ-
ବୀଣା ଜିଣା ତା'ର ଗୀତ ।
କଡୁଆ କଡୁଆ ସବୁଠୁଁ କଡୁଆ-
ପ୍ରିୟା କରିଥିଲେ ରୋଷ ।
ସୁନ୍ଦର ସୁନ୍ଦର ସବୁଠୁଁ ସୁନ୍ଦର-
ମୋ ପ୍ରିୟାର ଫୁଲ ବେଶ । (୧)

ଚହଲା ଚହଲା ସବୁଠୁଁ ଚହଲା-
ତାହାରି ଚହଲା ମନ,
ଚଞ୍ଚଳା ଚଞ୍ଚଳା ସବୁଠୁଁ ଚଞ୍ଚଳା-
ନାଚି ଉଠେ ତା' ନୟନ ।
ହାଲୁକା ହାଲୁକା ସବୁଠଁ ହାଲୁକା-
ମୋ ପ୍ରିୟା ମୁରୁକି ହସ ।
ସୁନ୍ଦର ସୁନ୍ଦର ସବୁଠୁଁ ସୁନ୍ଦର-
ମୋ ପ୍ରିୟାର ଫୁଲ ବେଶ । (୨)





ହଜି ମୁଁ ଯାଇଛି ଅଜଣା ରାଇଜେ-
ଖୋଜି ମୁଁ ପାଉନି ମୋତେ,
ନିଜ ପରିଚୟ ଦେଇ ପାରୁନାହିଁ-
ନିଜକୁ ପଚାରେ ଯେତେ ।
(ଘୋଷା)

କେଉଁ ଯାଦୁକର କାଉଁରୀ ଛୁଆଇଁ ,
ଅବଶ ମନକୁ ଦେଇଛି ଚିଆଇଁ ।
ଲେପ ଦେଇଛି କେ ମୋର ଅଙ୍ଗେ ଅଙ୍ଗେ-
ଚିହ୍ନି ପାରି ନାହିଁ ସତେ ।
ହଜି ମୁଁ ଯାଇଛି ଅଜଣା ରାଇଜେ-
ଖୋଜି ମୁଁ ପାଉନି ମୋତେ । (୧)

ଛନ ଛନ ହୁଏ ମୋର ତନୁ ମନ,
ହୃଦୟେ କାହିଁକି ଜାଗେ ଶିହରଣ ।
ଜାଣି ପାରେ ନାହିଁ ମୋ ଆଖିରେ କିଏ-
ରଙ୍ଗ ଭରି ଦେଲା ଏତେ ।
ହଜି ମୁଁ ଯାଇଛି ଅଜଣା ରାଇଜେ-
ଖୋଜି ମୁଁ ପାଉନି ମୋତେ । (୨)





ତାରା ହୋଇ ତୁମେ ଦେଖା ଦିଅ ନାହିଁ-
ତମସା ଭରା ଜୀବନେ,
ଅତୀତ କୁ ମୋର ଖୋଲି ଦିଅ ନାହିଁ-
ଝୁରି ମରେ ମନେ ମନେ ।
(ଘୋଷା)

ବସନ୍ତ ଆସିଲେ ଛୁଇଁ ଯାଅ ନାହିଁ-
ମଳୟ ମରୁତ ହୋଇ,
ଅଜାଣତେ ମୋତେ ଛାଡ଼ି ଯାଅ ନାହିଁ-
ଶିଶିରେ ଭିଜାଇ ଦେଇ ।
ଶରତର ନୀଳ କାଚକେନ୍ଦୁ ଜଳେ-
ଦେଖା ଦିଅନି ସପନେ ।
ତାରା ହୋଇ ତୁମେ ଦେଖା ଦିଅ ନାହିଁ-
ତମସା ଭରା ଜୀବନେ । (୧)

ଶୀତ ସକାଳର ଶୀତଳ ପରଶ-
ଛୁଆଇଁ ଦିଅନି ମୋତେ,
ବଇଶାଖୀ ତୁମେ ଜାଳି ଦିଅ ନାହିଁ-
ଜଳି ଗଲିଣି ମୁଁ ସତେ ।
ବରଷା ରାତିରେ ଶ୍ରାବଣୀ ଗୋ ତୁମେ -
ପକାଇବ ନାହିଁ ମନେ ।
ତାରା ହୋଇ ତୁମେ ଦେଖା ଦିଅ ନାହିଁ-
ତମସା ଭରା ଜୀବନେ । (୨)





ଝରା ଫୁଲ ପାଖୁଡ଼ାରେ-
ଲେଖିଲି ଏ' ଶେଷ ଚିଠି,
ଜାଳି ଦେଲ ଅତୀତର-
ସକଳ ଅଭୁଲା ସ୍ମୃତି ।
(ଘୋଷା)

ମନକୁ ଜଳାଇ ମୋର-
ଓଠ ଲୁହ ପିଇଯାଏ,
ଆଶାର ଦୀପାଳି ସିନା-
ଧୀରେ ଧୀରେ ଲିଭିଯାଏ ।
କେମିତି ଭୁଲିବି କୁହ-
ଯିଏ ଥିଲା ସବୁ କିଛି ।
ଝରା ଫୁଲ ପାଖୁଡ଼ାରେ-
ଲେଖିଲି ଏ' ଶେଷ ଚିଠି । (୧)

ମୋ ସପନ ସବୁଜିମା-
ସାହାରା ସାଜିଛି ଆଜି,
ବତାସରେ ଉଡ଼ି ବୁଲେ-
ନୀଡ଼ ହରା ପକ୍ଷୀ ସାଜି ।
ଝୁରୁଛି ମୁଁ ଝୁରୁଥିବି-
ଗାଇ ବେଦନାର ଗୀତି ।
ଝରା ଫୁଲ ପାଖୁଡ଼ାରେ-
ଲେଖିଲି ଏ'ଶେଷ ଚିଠି । (୨)

  



୭୯

ମନର ଭାଷାକୁ ଯଦି-
ପ୍ରିୟା ମୋର ବୁଝେ ନାହିଁ ,
ଲେଖିବି କା' ପାଇଁ ଗୀତ-
ଗାଇବି ମୁଁ କାହା ପାଇଁ ।
(ଘୋଷା)

ମନ ବଗିଚାରେ ମୋର -
ବସନ୍ତ ଆସିଲା ଯେବେ,
ଚାହିଁ ରହିଗଲି ସିନା-
ଫୁଲ ଫୁଟେ ନାହିଁ କେବେ ।
ବୀଣାରେ ଦେଲି ରାଗିଣୀ-
ସୁର ତାଳ ପାଏ ନାହିଁ ।
ମନର ଭାଷାକୁ ଯଦି-
ପ୍ରିୟା ମୋର ବୁଝେ ନାହିଁ । (୧)

ପ୍ରଥମ ଆଷାଢ଼େ ଯଦି-
କଳା ମେଘ ସାଜେ ମୁହିଁ,
ଶ୍ରାବଣୀ ନିଷ୍ଠୁର ହେଲା-
ବରଷା ଝରିଲା ନାହିଁ ।
କହିବି ମନର କଥା-
ବସିଛି ତା' ବାଟ ଚାହିଁ ।
ମନର ଭାଷାକୁ ଯଦି-
ପ୍ରିୟା ମୋର ବୁଝେ ନାହିଁ । (୨)






ହଜାଇ ଦେଇଛି ପ୍ରିୟାକୁ ମୋହର-
ଆଉ ଖୋଜି ପାଉ ନାହିଁ,
ମୋର ମନ ପକ୍ଷୀ ଖୋଜେ ନୀଡ଼ ତା'ର-
ଥକି ପଡ଼େ ଧାଇଁ ଧାଇଁ ।
(ଘୋଷା)

ପଢ଼ି ପାରି ନାହିଁ ତା'ର ମନ ବହି-
ଖୋଲୁ ଖୋଲୁ ଗଲା ଉଡ଼ି ,
କନକ କଳିକା ଫୁଟିବା ବେଳରେ-
ବୃନ୍ତରୁ ପଡ଼ିଲା ଝଡ଼ି ।
କିଏ ଗଢି ଦେବ କିଏ ଯୋଡ଼ିଦେବ-
ଭଙ୍ଗା କଣ୍ଢେଇକୁ ନେଇ ।
ହଜାଇ ଦେଇଛି ପ୍ରିୟାକୁ ମୋହର-
ଆଉ ଖୋଜି ପାଉ ନାହିଁ । (୧)

ହଜି ଯାଇଥିବ ବାଲୁକା ରାଶିରେ-
ଜ୍ୟୋଛନାରେ ଭିଜି ଭିଜି ,
ଚାଲି ଯାଇଥିବ ଅଜଣା ରାଇଜେ-
ଆକାଶର ମେଘ ସାଜି ।
କିଏ ଖୋଜି ଦେବ ପ୍ରିୟାର ମନକୁ-
ମୋ ଜୀବନ ବନ୍ଧା ନେଇ ।
ହଜାଇ ଦେଇଛି ପ୍ରିୟାକୁ ମୋହର-
ଆଉ ଖୋଜି ପାଉ ନାହିଁ । (୨)





ତୁମେ ଆଜି ସତେ କିଆଁ-
ଭାରି ଭଲ ଦିଶୁଛ ?
ଫୁଲର ପସରା ନେଇ-
ମହ ମହ ବାସୁଛ ।
(ଘୋଷା)

ତୁମ ଓଠ ପାଖୁଡ଼ାରେ-
ଝରି ପଡ଼େ ମୁକୁତା-
ତୁମରି ଭାଷାରେ ଆଜି-
ଫୁଟେ କେତେ କବିତା ।
ମୋ ମନର ଭାଷା ବୁଝି-
ଚୁପି ଚୁପି ହସୁଛ ।
ତୁମେ ଆଜି ସତେ କିଆଁ-
ଭାରି ଭଲ ଦିଶୁଛ ? (୧)

ଅଳସୀ ଆଖିରେ ତୁମ-
କିଏ ଦେଲା କଜ୍ଜଳ,
ସୀମନ୍ତେ କୁଙ୍କୁମ ବିନ୍ଦୁ-
କରେ ମୁଖ ଉଜ୍ଜଳ ।
ମୁଁ ଜାଣେ ତୁମେ ଜାଣ-
ମିଛେ ମିଛେ ରୁଷୁଛ ।
ତୁମେ ଆଜି ସତେ କିଆଁ-
ଭାରି ଭଲ ଦିଶୁଛ ? (୨)





## ୮୨

କାହାକୁ କେବେ ଭଲ ପାଇଛି-
ଖୋଲି ତ କହି ନାହିଁ,
ପ୍ରେମ ନକରି କୁହ କେମିତି-
ପ୍ରେମିକା ହେଲି ମୁହିଁ ?
(ଘୋଷା)

ଗୋଲାପ ବୋଲି କହୁଛ ଯେବେ-
କାହିଁ ମୋ ରଙ୍ଗ ବାସ ?
ନୁହେଁ ମୁଁ ନଦୀ ହୋଇବି ବନ୍ଦି-
ଯାଇ ସାଗର ପାଶ ।
ଚାନ୍ଦକୁ କିଆଁ ଚାହିଁ ରହିବି-
ନୁହେଁ ମୁଁ ନୀଳ କଇଁ ।
କାହାକୁ କେବେ ଭଲ ପାଇଛି-
ଖୋଲି ତ କହି ନାହିଁ । (୧)

ପତଙ୍ଗ ନୁହେଁ ଡେଇଁ ପଡ଼ିବି-
ଜଳି ଉଠିଲେ ଜୁଇ,
ରଜନୀ ନୁହେଁ ଖୋଜି ବୁଲିବି-
ଜୋଛନା ଟିକେ ପାଇଁ ।
ନୁହେଁ ମୁଁ ନୀଳ ଆକାଶେ ମେଘ-
ଯିବି ବରଷା ହୋଇ । (୨)







ଫୁଲଠୁ ସତେ କୋମଳ ମଧୁଝରା ମନ ଯା'ର-
ଲାଜରେ ଝାଉଁଳା ତା'ର ଆଖି,
ଓଠରେ ଭରିଛି ଯା'ର ମିଠା ମିଠା ହସ ଧାର-
ତା' ଆଖିରେ ଆଖି ଯାଏ ଲାଖି । (ଘୋଷା)

ତା'ର ଛବି ଗୋପନରେ ନାଚି ଉଠେ ସପନରେ,
ମରୁରେ ଦେଖୁଛି ସିନା ଫଗୁଣର ସବୁଜିମା,
ସେଇ ଓଠ ସେଇ ହସ ଦେଖି ତା'ର ଫୁଲ ବେଶ-
ଏ' ମନକୁ ଦେଲି ତାକୁ ବିକି ।
ତା' ଆଖିରେ ଆଖି ଯାଏ ଲାଖି । (୧)

ଅଳପ କଥାଟି ତା'ର କିଣି ନେଲା ମନ ମୋର,
ସେଇ ଆଖି ସେଇ ମନ ସେ ଛବି ସେଇ ସପନ ,
ପିଇବାକୁ ତା' ପୀୟୁଷ ପାଇବାକୁ ତା' ପରଶ-
ଖୋଜି ବୁଲେ ମୋର ମନ ପକ୍ଷୀ ।
ତା' ଆଖିରେ ଆଖି ଯାଏ ଲାଖି । (୨)

  



ଆକାଶେ ଥିଲା ଜହ୍ନ-
ଆଉ ତଡାଗେ ଥିଲା କଇଁ,
ଦୁହେଁ ଦୁହିଁଙ୍କୁ ପାଇବା ପାଇଁ-
ଥିଲେ ବିକଳ ହୋଇ ।(ଘୋଷା)

ଫୁଲ ଯାଚିଲା ମଧୁ-ରୂପ ରଂଗ ସଜେଇ,
ଅଳି ଡାକିଲା ବଂଧୁ-ସେ ମଧୁ ପିଇ ପିଇ ।
ଜହ୍ନ କି କଇଁ ଫୁଲ କି ଅଳି-
କାହାରି ଦୋଷ ନାହିଁ ।
ଦୁହେଁ ଦୁହିଁଙ୍କୁ ପାଇବା ପାଇଁ-
ଥିଲେ ବିକଳ ହୋଇ । (୧)

ତଟିନୀ ଗଲା ଧାଇଁ ବଣ ପାହାଡ ଡେଇଁ ,
ଦୁନିଆ ଗଲା ଭୁଲି ସାଗର କୋଳ ପାଇ ,
କେଉଁ ଯୁଗରୁ ଖୋଜୁଥିଲି ମୁଁ
ତୁମକୁ ଗଲି ପାଇ ।
ଦୁହେଁ ଦୁହିଁଙ୍କୁ ପାଇବା ପାଇଁ-
ଥିଲେ ବିକଳ ହୋଇ । (୨)

  



୮୫

ଆଜି ଜହ୍ନ ହସେ ଆକାଶରେ-
ମନ ଧୋଇ ଦିଏ ଜ୍ୟୋଛନାରେ-
ମୋର ଆଖିରେ ଆଖିଏ ରଂଗ-
କିଏ ଡ଼ାକି ନିଏ ସପନରେ ।
ହାଏ -
ମଧୁ ବୋଳି ଦିଏ ଅଧରରେ ।(ଘୋଷା)

ଫୁଲ ଫଗୁଣ ପରଶ ପାଇ,
ଅଳି ବୁଲେ ଗୀତ ଗାଇ ଗାଇ ।
ଗାଏ କୋଇଲି ମଧୁର ସୁରେ,
ସେଇ ସୁର ଶୁଭେ ବାରେ ବାରେ ।
ହାଏ-
ଖାଲି ଫଗୁଣର ମଧୁ ଝରେ ।
ଆଜି ଜହ୍ନ ହସେ ଆକାଶରେ । (୧)

ମୋତେ ଛୁଇଁ ଦେଇ ଗଲା ଯିଏ,
ମନ ଛନ ଛନ କଲା ସିଏ ।
ସେଇ ମନର ମଣିଷ ପାଇଁ,
ହାଏ-
ଏବେ ତା' ପାଇଁ ମୁଁ ଝୁରିମରେ ।
ଆଜି ଜହ୍ନ ହସେ ଆକାଶରେ । (୨)







# ୮୬

ତୁମରି ଗୀତକୁ ଗୁଣୁ ଗୁଣୁ ଗାଇ-
ସାଜିଥିଲି ଦିନେ ଗାୟିକା,
ତୁମରି ଜୀବନ ନାଟକରେ ପୁଣି-
କରିନେଲ ମୋତେ ନାୟିକା ।(ଘୋଷା)

ଦେଇଛ ମନକୁ ମୋର ମନ ନେଇ,
ଅନୁରାଗ ଡେଉ ଯାଏ ଛୁଇଁ ଛୁଇଁ,
ବୃନ୍ଦାବନେ ତୁମେ ଘନ ଶ୍ୟାମ ସାଜି-
ସଜାଇଲ ମୋତେ ରାଧିକା ।
ତୁମରି ଗୀତକୁ ଗୁଣୁ ଗୁଣୁ ଗାଇ-
ସାଜିଥିଲି ଦିନେ ଗାୟିକା । (୧)

ଆଶାର ଦୀପାଳି ଜଳି ଉଠେ ତେଜି,
ତୁମକୁ ପାଇ ମୁଁ ଯାଇଛି ତ ହଜି ।
ଥିବି ସବୁଦିନ କୋଳରେ ତୁମର-
ସାଗରକୁ କହେ ଶାମୁକା ।
ତୁମରି ଗୀତକୁ ଗୁଣୁ ଗୁଣୁ ଗାଇ-
ସାଜିଥିଲି ଦିନେ ନାୟିକା । (୨)

  



୮୭

ଚାହିଁ ବସିଥିଲେ ତୁମରି ପଥକୁ-
ଲାଗେ ଯୁଗଟାଏ ପରି,
ତୁମ ପାଇଁ ଯଦି ଗୀତ ଲେଖି ବସେ-
କେତେ ରସ ଯାଏ ଭରି ।
(ଘୋଷା)
ତୁମ ସାଥେ ଏକା କଥା ହେଉ ଥିଲେ-
ଆସେ କେତେ ନୂଆ ଭାଷା,
ତୁମରି ଆଖିକୁ ଚାହିଁ ଦେଲେ ଥରେ-
ଲାଗିଯାଏ ମୋତେ ନିଶା ।
ଆଖିରେ ଆଖିରେ କଥା ହେଉଥିଲେ-
ଦେହ ମନ ଯାଏ ଥରି ।
ତୁମ ପାଇଁ ଯଦି ଗୀତ ଲେଖି ବସେ-
କେତେ ରସ ଯାଏ ଭରି । (୧)

ତୁମ କଥା ଯଦି ଭାବି ବସେ କେବେ-
ଭୁଲିଯାଏ ଦିନ ରାତି,
ଭାରି ଭଲ ଲାଗେ ଅବସର ବେଳେ
ତୁମ ନାମ ଜପି ଜପି ।
ନୂଆ ଭାଷା ଦେଇ ନୂଆ ନିଶା ଦେଇ-
ମୋ ମନ କରିଛ ଚୋରି ।
ତୁମ ପାଇଁ ଯଦି ଗୀତ ଲେଖି ବସେ-
କେତେ ରସ ଯାଏ ଭରି । (୨)

  



ତୁମରି ସୁରରେ ରାଗିଣୀ ସଜାଇ-
ସରମେ ଦେଇଛ ଢାଳି,
ଅଧା ପଢ଼ା ହୋଇ ବସିଛି ଖାଲି ମୁଁ-
ପ୍ରଣୟର ପୋଥି ଖୋଲି ।
(ଘୋଷା)
ଫୁଟି ପାରୁ ନାହିଁ ରାଗ ଫୁଲ ମୁହିଁ-
ଚାହୁଁଛି ମୁଁ ସୂର୍ଯ୍ୟୋଦୟ,
ପଞ୍ଚମ ରାଗରେ ଗା କୁହୁତାନେ-
କରି ପ୍ରୀତି ବିନିମୟ ।
ଅଙ୍କେ ତୋଳି ନେଇ କାନେ ମୋର କୁହ-
ସୁହାଗିନୀ ବଧୂ ବୋଲି । (୧)

ଚମକି ଉଠିଛି ମୋ ମନ ମୟୂରୀ-
ପ୍ରଥମେ ଷଡ଼ଜ ରାଗେ,
ଗାଉଛି ଗାନ୍ଧାର ତୃତୀୟେ ନଡ଼ରି-
ବାନ୍ଧି ହୋଇ ଅନୁରାଗେ ।
ତୁମେ ସୁର ହେଲେ ମୁଁ ହେବି ରାଗିଣୀ-
ପ୍ରୀତି ସୁଧା ଢାଳି ଢାଳି । (୨)

  



ଜହ୍ନ ଗୋ ତୁମେ ଲୁଚିବନି ଆଉ-
କୋଇଲି ଗୋ ତୁମେ ରୁଷିବନି,
ପ୍ରିୟାକୁ କହିଛି ଗାଇବନି ଗୀତ-
ମନ ଖୋଲି ଆଉ ହସିବନି ।
(ଘୋଷା)
ତଟିନୀ ଗୋ ତୁମେ ଅଟକିବ ନାହିଁ-
ଦେଖି ମୋର ପ୍ରିୟା ଧୀର ଚାଲି,
ତୁମକୁ ବରଷା ଦେଉଛି ଭରଷା-
କାନ୍ଦିବନି ତୁମେ ଲୁହ ଡାଳି ।
କଥା ଦେଇଛି ମୋ ପ୍ରିୟା ରାଣ ଖାଇ-
କବରୀ ଖୋଲି ସେ ବସିବନି ।
ଜହ୍ନ ଗୋ ତୁମେ ଲୁଚିବନି ଆଉ-
କୋଇଲି ଗୋ ତୁମେ ରୁଷିବନି । (୧)

ଗଙ୍ଗଶିଉଳି ଗୋ ଯିବନି ଝାଉଁଳି-.
ଦେଖି ଦେଲେ ମୋର ପ୍ରିୟା ବେଶ,
ଛନ୍ଦ ହରା ହେବ ନାହିଁଟି ମୟୂର -
ଯେତେ ଇଚ୍ଛା ମନ ଖୋଲି ନାଚ ।
କହିଛି ମୋ ପ୍ରିୟା କୋଳେ ଲୁଚିଯିବ-
ତୁମକୁ ଆଉ ସେ ଦିଶିବନି ।
ଜହ୍ନ ଗୋ ତୁମେ ଲୁଚିବନି ଆଉ-
କୋଇଲି ଗୋ ତୁମେ ରୁଷିବନି (୨)

  



ସାଗର ଚାହିଁଛି ନଦୀର ପଥକୁ -
ନଦୀ ଖୋଜୁଛି ସାଗର,
ଖୋଜି ହୁଏ ମୁହିଁ ତୁମରି ମନକୁ-
ଜଳାଇ କେତେ ଜାଗର ।
(ଘୋଷା)

କିଣି ନେବି ମନ ବିକି ମୋ ଜୀବନ ,
ମୋ ଆଖିରେ ଆଜି ଭରିଛି ସପନ ।
କୋଳେଇ ନେବ ସେ ନଦୀକୁ ତାହାର-
ସାଗରେ ଉଠେ ଜୁଆର ।
ଖୋଜି ହୁଏ ମୁହିଁ ତୁମରି ମନକୁ-
ଜଳାଇ କେତେ ଜାଗର । (୧)

ସାଗରକୁ ପାଇ ନଦୀ ଯାଏ ହଜି,
ନିଜ ମାନ ଭୁଲି ଯାଇଛି ସେ ଆଜି ।
ଭୁଲିବି ଦୁନିଆ ପାଇଲେ ତୁମକୁ-
ହୋଇଯିବି ମୁଁ ତୁମର ।
ଖୋଜି ହୁଏ ମୁହିଁ ତୁମରି ମନକୁ-
ଜଳାଇ କେତେ ଜାଗର । (୨)

  



ଭଲ ପାଇଛି ମୁଁ ତାକୁ  ଭାରି ଭଲ ପାଉଛି,
ଲୁଚେଇ ଥିଲି ମୁଁ ଯାହା ଆଜି ଖୋଲି କହୁଛି ।
(ଘୋଷା)

ଇସାରା ଥିଲା କାହାର,
ଅଜଣା ଥିଲା ମୋହର ।
ଯାଚୁଥିଲି ମନ ପ୍ରାଣ,
ଆଜି ବିକି ଦେଉଛି ।
ଭଲ ପାଇଛି ମୁଁ ତାକୁ ଭାରି ଭଲ ପାଉଛି,
ଲୁଚେଇ ଥିଲି ମୁଁ ଯାହା ଆଜି ଖୋଲି କହୁଛି ।  (୧)

ପର ଲାଗୁଥିଲା ଯିଏ,
ନିଜର ହୋଇଛି ସିଏ ।
ଯାହା ପାଶେ ହାରିଛି ମୁଁ-
ତାକୁ ଝୁରି ହେଉଛି ।
ଭଲ ପାଇଛି ମୁଁ ତାକୁ  ଭାରି ଭଲ ପାଉଛି,
ଲୁଚେଇ ଥିଲି  ମୁଁ ଯାହା  ଆଜି ଖୋଲି କହୁଛି ।  (୨)

  

## ୯୨

ମୋ ସୁର ଲତାର ଆଗୋ ରାଗ ଫୁଲ-
ଗାଇଲ ଶଙ୍କରା ଭରଣ,
ପ୍ରଥମରେ ହସ ଦ୍ୱିତୀୟେ ପରଶ-
ତୃତୀୟରେ ହେଲା ସପନ ।
(ଘୋଷା)

ଚତୁର୍ଥେ କଳ୍ପନା ତା'ପରେ ଭାବନା-
ପଞ୍ଚମରେ ଜାତ ପ୍ରେମ,
ଷଡ଼ରୁ ସୁହାଗ ବଢ଼େ ଅନୁରାଗ-
ସପ୍ତମେ ହେଲା ପୂରଣ ।
ମୋ ସୁର ଲତାର ଆଗୋ ରାଗ ଫୁଲ-
ଗାଇଲ ଶଙ୍କରା ଭରଣ,
ପ୍ରଥମରେ ହସ ଦ୍ୱିତୀୟେ ପରଶ-
ତୃତୀୟରେ ହେଲା ସପନ । (୧)

ମୁଁ ଆଜି ଗାଇବି ତୁମରି ରାଗରେ-
ଛନ୍ଦ ତୋଳି ଶ୍ୟାମ କଲ୍ୟାଣ ,
ଫୁଟିବ ଗୋ ତୁମେ ମୋ ସୁର ଲତାରେ-
ସୁର ରାଗ ହେବ ମିଳନ ।
ମୋ ସୁର ଲତାର ଆଗୋ ରାଗ ଫୁଲ-
ଗାଇଲ ଶଙ୍କରା ଭରଣ,
ପ୍ରଥମରେ ହସ ଦ୍ୱିତୀୟେ ପରଶ-
ତୃତୀୟରେ ହେଲା ସପନ । (୨)







ଜୀବନ ନାଟକେ ଆମେ ଦୁଇ ଜଣ-
କରୁଥିଲେ ଅଭିନୟ,
ହସ ଆଉ କାନ୍ଦ  ଦୁଃଖ ଆଉ ସୁଖ
ହେଉଥିଲା ବିନିମୟ ।
(ଘୋଷା)

ତୁମରି ହସର  ପସରା ମୁଣ୍ଡାଇ ,
ତୁମ ପ୍ରୀତି ଭାଷା  ଗୀତି ଗାଇ ଗାଇ ।
ମୋର ପାଇଁ ତୁମେ ତୁମ ପାଇଁ ମୁହିଁ-
ଏଇ ଥିଲା ପରିଚୟ ।
ଜୀବନ ନାଟକେ ଆମେ ଦୁଇ ଜଣ-
କରୁଥିଲେ ଅଭିନୟ ।  (୧)

ଆମରି ନାଟକ  ରଂଗମଞ୍ଚ ଭାଜି,
ଲୋତକରେ ସବୁ  ସୁଖ ଗଲା ଭିଜି ।
ପରଦା ପଡ଼ିଲା ତଳେ,
ଝରାଫୁଲ ମୁହିଁ ବିରହୀ କପୋତୀ
ନୀରବେ ଲୋତକ ଢାଳେ ।
ସେଇ ନାଟକରେ ଜିତିଗଲ ତୁମେ-
ହେଲା ମୋର ପରାଜୟ ।
ଜୀବନ ନାଟକେ ଆମେ ଦୁଇ ଜଣ-
କରୁଥିଲେ ଅଭିନୟ ।  (୨)

  



# ୯୪

ତୁମେ ମୋର ପ୍ରିୟତମା-
ଫଗୁଣର ଫୁଲରାଣୀ,
ତୁମରି ମହକ ଆଜି-
ମୋ ମନ ନେଇଛି କିଣି ,
(ଘୋଷା)
ବସନ୍ତର ଫୁଲବନେ - ମୁହିଁ ତ କଳା ଭଅଁର,
ଦେଖିଛି ମୁଁ ଫୁଟିଲାଣି- କଳି ଝାଡି ତା' ଚଅଁର ।
ମତୁଆଲା ମହୁମାଛି-
ସାଜିଛି ମୁଁ ଜାଣି ଜାଣି ।
ତୁମେ ମୋର ପ୍ରିୟତମା-
ଫଗୁଣର ଫୁଲରାଣୀ । (୧)
କାଲିର କଳିକା ତୁମେ- ଆଜି ସଜଫୁଟା ଫୁଲ,
ଫଗୁଣ ପରଶ ପାଇ - ମନ ଦେଇ ମନ ନେଲ ।
ତୋଳି ନେବି ତୁମକୁ ମୁଁ -
ପୀରତିର ରେଣୁ ବୁଣି ।
ତୁମେ ମୋର ପ୍ରିୟତମା-
ଫଗୁଣର ଫୁଲରାଣୀ । (୨)

  



ସପନରେ ହଜିବାକୁ- ଭାବନାରେ ମଜିବାକୁ-
ଭଲ ଲାଗେ ଭଲ ଲାଗେ,
ଭାରି ଭଲ ଲାଗେ ।
ତୁମ କଥା ଭାବିବାକୁ-ଅତୀତକୁ ଝୁରିବାକୁ
ଆଜି ମୋତେ ଭାରି ଭଲ ଲାଗେ ।
(ଘୋଷା)

ବରଷାରେ ଭିଜିବାକୁ ଆକାଶକୁ ଚାହିଁବାକୁ,
ଏକା ଏକା ବସିବାକୁ ଚାପି ଚାପି ହସିବାକୁ ,
ମେଘକନ୍ୟା ଝରକାରେ ପାହାଡ଼ର ଉହାଡ଼ରେ-
ଭଲ ଲାଗେ ଖେଳିବାକୁ-
ଲୁଚି ଲୁଚି ଜହ୍ନ ସଂଗେ ।
ଆଜି ମୋତେ ଭାରି ଭଲ ଲାଗେ । (୧)

ମିଛେ ମିଛେ ରୁଷିବାକୁ ଅମାନିଆଁ ହୋଇବାକୁ,
ନିଜ କଥା ଭୁଲିବାକୁ କୁହୁଡ଼ିରେ ବୁଡ଼ିବାକୁ ,
ସବୁ ଆଜି ନୂଆ ନୂଆ ସପନରେ ଛୁଆଁ ଛୁଆଁ-
ଜାଣେନା ମୁଁ କେଉଁ କଥା-
ଲୁଚି ଆସି ମୋର ମନେ ଜାଗେ ।
ଆଜି ମୋତେ ଭାରି ଭଲ ଲାଗେ । (୨)







କାମନାର ଉପବନେ - ମୁହିଁ ଏକ ପ୍ରୀତି ଫୁଲ,
ଅନ୍ଧ ମହୁମାଛି ତୁମେ - ମୋର ବାସରେ ପାଗଳ ।
(ଘୋଷା)

ଯିବ ଉଡ଼ି ଡେଣା ଝାଡ଼ି - ମୋର ମଧୁ ପିଇ ପିଇ,
ଢଳି ଢଳି ଝୁଲି ଝୁଲି ହସୁଥିବ ମୋତେ ଚାହିଁ ।
ବୁଡ଼ିଯିବା ପ୍ରେମ ଜଳେ-
ପାଇବାନି ଥଳକୂଳ ।
କାମନାର ଉପବନେ - ମୁହିଁ ଏକ ପ୍ରୀତି ଫୁଲ । (୧)

ରଂଗ ଭରା ଦୁନିଆରେ - ପାଇ ଆମେ ନୂଆ ନିଶା,
ନାଚି ଯିବା ରଚି ଯିବା - ମଧୁର ପ୍ରଣୟ ଭାଷା ।
ସରଗରେ ତୋଳି ଦେବା
ପୀରତି ତାଜ ମହଲ ।
କାମନାର ଉପବନେ - ମୁହିଁ ଏକ ପ୍ରୀତି ଫୁଲ । (୨)

  



ହସିଲା ହସିଲା ଲାଗେ ତୁମରି ମୁହଁଟି ମୋତେ,
ଦେଖିଲା ଦେଖିଲା ପରି ଲାଗୁଛି ତୁମକୁ ସତେ ।
(ଘୋଷା)

କହିଲା କହିଲା ପରି ଦିଶୁଛି ତୁମରି ଆଖି,
ଭାସିଲା ଭାସିଲା ମନ ତୁମକୁ ଦେଇଛି ବିକି ଆ
ଯାଚି ଦେଇଛି ଏ ପ୍ରାଣ -
ମାଗିଲା ମାଗିଲା ହାତେ ।
ଦେଖିଲା ଦେଖିଲା ପରି ଲାଗୁଛି ତୁମକୁ ସତେ । (୧)

ନାଚିଲା ନାଚିଲା ପାଦ ରିମି ଝିମି ନିଶା ଦିଏ,
ଥରିଲା ଥରିଲା ଓଠକାନେ ନୂଆ ଭାଷା କହେ ।
ଚେଇଁଲା ଚେଇଁଲା ଲାଗେ-
କାଉଁରୀ ଛୁଆଁଇ ଚିତ୍ତେ ।
ଦେଖିଲା ଦେଖିଲା ପରି ଲାଗୁଛି ତୁମକୁ ସତେ । (୨)

  



ଠିକଣା ତୁମର ବଦଳି ଗଲାଣି-
ଅଚିହ୍ନା ଲାଗୁଛି ଏବେ,
ଭୁଲି ଯାଇଥିବ ଅଭୁଲା ଦିନକୁ-
ପ୍ରିୟା ଡାକୁଥିଲ କେବେ ।
(ଘୋଷା)

ଦିନ ଥିଲା ତୁମେ ମୋ ଚଲାପଥକୁ-
ରହୁଥିଲ ଚାହିଁ ଚାହିଁ,
କେତେ ଶୀତ ରାତି ଯାଉଥିଲା ବିତି-
ଖରା ବରଷାକୁ ସହି ।
ସେଦିନ କାହାଣୀ ଥିଲା କି ଛଳନା ?
ଆଜି ସେହି କଥା ଭାବେ । (୧)

କହୁଥିଲ ତୁମେ ମୋ ବିନା ଜୀବନ-
ସତେ ତୁଚ୍ଛ ମରୁବାଲି,
ମୋ ଭାଷାରେ ଭରି ରହିଛି ପୀୟୂଷ-
ଚାହିଁଛି ପିଇବ ବୋଲି ।
କହିବ କି ଆଉ କା' ରୂପ ନିଆଁରେ-
ଝାସ ଦେଇଅଛ ଏବେ ? (୨)

  



ଭଲ ପାଇବାର ବରଷେ ପୂରିଲା-
ଦେଲନାହିଁ ଖଣ୍ଡେ ଚିଠି,
ବୁଝିଲନି ଥରେ ପଚାରିଲ ନାହିଁ -
କେମିତି ରହିଛି ଏଠି ?
(ଘୋଷା)

କଥା ଦେଇଥିଲ ଦେଖାଇବ ମୋତେ
ସପନେ ସପନପୁର,
ସରଗର ସୁଖ ଚଖାଇବ ମୋତେ-
କରିବନି ମୋତେ ପର ।
ଦେଖିଯାଅ ଥରେ ତୁମରି ବିହୁନେ -
ପେଟରେ ମିଶିଛି ପିଠି । (୧)

ଫୁଲର ମହକ ବାସେ ନାହିଁ ମୋତେ-
ମିଠା ଲାଗେନାହିଁ ଗୁଡ଼,
ଫଗୁଣ ପବନ ଏଡ଼ିକି ଦାରୁଣ-
ମନରେ ଉଠାଏ ଝଡ଼ ।
କହିଯାଅ ଥରେ ମୁଁ ଅଛି ସାଥୀରେ-
ସବୁ ଦୁଃଖ ନେବା ବାଣ୍ଟି । (୨)







ତୁଠ ତ ଖସଡ଼ା ଶିଉଳି ଖସଡ଼ା-
ଆହୁରି ଖସଡ଼ା ମନ,
ନହୁଲି ବୟସୀ ସପନ ଦେଖୁଛି-
ଆଖି ଦୁଇ ଛନ ଛନ ।
(ଘୋଷା)

ପାଦ ଖସିଗଲେ ପଡ଼ିଯିବୁ ଗୋରୀ-
ପୀରତି ପଥ ଖସଡ଼ା,
ମିଠା କଥା କୁହା ମଥାରେ ଥୋଇବ-
ଅପବାଦର ପସରା ।
ଖସଡ଼ା ବାଟରେ ପାଦ ଚିପି ଯିବୁ-
ମନ କରିଥିବୁ ଟାଣ । (୧)

ବାସି ହେଲେ ଫୁଲ ନାହିଁ ତା'ର ମୂଲ-
ହାଣ୍ଡି ଫୁଟିଗଲେ କଣା,
ମନ କିଣା ବିକା ହୋଇଗଲେ ଥରେ-
ହୋଇଯିବୁ ବାଟବଣା ।
ସାରୁ ପତରରେ ମୋତି ଡଳ ଡଳ-
ଗାଲେ ଲାଗିଯିବ ଚୂନ । (୨)

  



**ଡକ୍ଟର କୃତ୍ତିବାସ ନାୟକ**

ଜନ୍ମ : ୦୨-୦୩-୧୯୫୫

ଗ୍ରାମ : ଏକତଲା, ରାଜକନିକା, କେନ୍ଦ୍ରାପଡ଼ା

ଡକ୍ଟର କୃତ୍ତିବାସ ନାୟକ ଓଡ଼ିଆ ସାହିତ୍ୟର ଏକ ସଶ୍ରଦ୍ଧ ଉଚ୍ଚାରଣ । ସାହିତ୍ୟର ବିଭିନ୍ନ ବିଭାବରେ କଲମ ଚଳାଇ ସେ ପ୍ରତ୍ୟେକ କ୍ଷେତ୍ରରେ ସଫଳତା ହାସଲ କରିଛନ୍ତି । ୧୯୮୪ ମସିହାରୁ ସେ ଆକାଶବାଣୀର ଜଣେ ସ୍ୱୀକୃତି ପ୍ରାପ୍ତ ଗୀତିକାର । ବାଲିମେଳା ଓ ଜୟପୁରରୁ ପ୍ରକାଶିତ ଶିଶୁପତ୍ରିକା 'ଶିଶୁନୟନ', 'ଆମେଶିଶୁ' ଓ 'ଶିଶୁ ରାଇଜ'ର ସେ ଥିଲେ, ସଫଳ ସଂପାଦକ । ୧୯୮୯ ମସିହାରୁ ସେ ଆକାଶବାଣୀର ଜଣେ ବରିଷ୍ଠ ଅଧିକାରୀ ଭାବରେ କାର୍ଯ୍ୟରତ । ଶିଶୁ ସାହିତ୍ୟ ପାଇଁ ସେ ୧୯୯୨ ଓ ୧୯୯୯ ମସିହାରେ ଜାତୀୟ ଶିଶୁ ସାହିତ୍ୟ ପୁରସ୍କାର ଲାଭ କରିଛନ୍ତି । ତାଙ୍କର ଉପନ୍ୟାସ 'ଶୁଭଲକ୍ଷ୍ମୀ'ର ହିନ୍ଦୀ ସଂସ୍କରଣ ପାଇଁ ସେ ୨୦୦୨ ବର୍ଷର ଜାତୀୟ ପୁରସ୍କାରରେ ପୁରସ୍କୃତ ହୋଇଛନ୍ତି । ଜ୍ଞାନ ସଂଗ୍ରହ, ଉତ୍କଳ ଦର୍ପଣ, ଢେଙ୍କାନାଳ ଦର୍ପଣ, ଆଜିର କୋରାପୁଟ, କେନ୍ଦୁଝର ଦର୍ପଣ, ସମ୍ବଲପୁର ପ୍ରତିଭା ଓ ରାଉରକେଲା ଦର୍ପଣ ପ୍ରଭୃତି ସୂଚନା ସାହିତ୍ୟ ସମେତ ତାଙ୍କର 'କୁଳବୋହୂ' ଉପନ୍ୟାସ ଓ ୪ଖଣ୍ଡ ଗୀତି କବିତା ପୁସ୍ତକ ପ୍ରକାଶ ପାଇ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଛି । ଅଦ୍ୟାପି ତାଙ୍କର ୮୦ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି ।

ISBN-8187968-22-2

